ପ୍ରକାଶକ :

ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ ୧ : ବ୍ରହ୍ମପୁର

ମୁଦ୍ରକ :

ପୂର୍ଣ୍ଣଚନ୍ଦ୍ର ଦାଶ

ଅନ୍ନଦା ପ୍ରେସ

ତୁଳସୀପୁର : କଟକ-୮

ପ୍ରଥମ ମୁଦ୍ରଣ :

ଜାନୁଆରୀ, ୧୯୭୩

ମୂଲ୍ୟ :

ଟ ୨-୦୦

# ସୂଚୀ

| ବିଷୟ | ପୃଷ୍ଠା |
|---|---|

# ସ୍ୱାର୍ଥପର କୁକ୍କୁର

ଜଣେ ଲୋକ ତାର ବଳଦର ଖାଇବା ପାଇଁ କାଠ ନନ୍ଦଆରେ କିଛି ନଡ଼ା କାଟି ରଖିଥିଲା । ଏହି ସମୟରେ ଗୋଟିଏ କୁକ୍କୁର ଆହାର ଖୋଜି ଖୋଜି ସେହି ନନ୍ଦଆରେ ପଶିଲା । କିନ୍ତୁ ନନ୍ଦଆରେ ତାହାର ଆହାରଯୋଗ୍ୟ କୌଣସି ଜିନିଷ ନଥିଲା । ସେ ନଡ଼ା ଉପରେ ଶୋଇ ରହିଲା ।

କିଛି ସମୟ ପରେ ବଳଦ ନଡ଼ା ଖାଇବାକୁ ଆସିଲା । ତହୁଁ କୁକ୍କୁର ଭୁକି, ଦାନ୍ତ ଦେଖାଇ ତାକୁ କାମୁଡ଼ିବାକୁ ବାହାରିଲା । ନଡ଼ାକୁ ମୁହଁ ବଢ଼ାଇବାପାଇଁ ବଳଦର ସାହସ ହେଲାନାହିଁ ।

କୁକ୍କୁର ତାକୁ ଏପରି ତଡ଼ିବାର କାରଣ ବଳଦ ବୁଝି ପାରିଲା ନାହିଁ । ସେ ନଡ଼ା ପାଖକୁ ମୁହଁ ବଢ଼ାଇଲା ମାତ୍ରେ କୁକ୍କୁର ତାକୁ କାମୁଡ଼ିବାକୁ ବାହାରିଲା । ବଳଦ କହିଲା, "ତୁ କେଡ଼େ ଖରାପ ଜୀବ ! ତୁ କଅଣ ନଡ଼ା ଖାଇବୁ ଯେ ଜଗି ବସିଛୁ ? ତୁ ନନ୍ଦଆରୁ ବାହାରିଗଲେ ମୁଁ ନଡ଼ା ଖାଇବି । ମାଲିକ ମୋ ଖାଇବା-ପାଇଁ ସେ ନଡ଼ା ରଖିଛି, ତୋ ଶୋଇବା ପାଇଁ ନୁହେଁ ।"

କୁକ୍କୁର କହିଲା, "ମୁଁ ନଡ଼ା ଖାଇବି ନାହିଁ ସତ; କିନ୍ତୁ ମୁଁ ଖାଇ ପାରିବି ନାହିଁ ବୋଲି ତୁ କାହିଁକି ଖାଇବୁ ? ମୁଁ ଉପାସ ଅଛି, ତୁ ମଧ୍ୟ ଉପାସ ରହ ।"

ଅଟଇ ଯେହୁ ସ୍ୱାର୍ଥପର
ତାହାର ଜୀବନ ଅସାର ।

# ଗଧ ଓ କୁକ୍‌କୁର

ଜଣେ ଲୋକର ଗୋଟିଏ ଗଧ ଓ ଗୋଟିଏ କୁକ୍‌କୁର ଥିଲା । ସେ ଗଧପାଇଁ ଘାସ ଓ କୁକ୍‌କୁର ପାଇଁ ମାଂସ ଝଞ୍ଜାକରି ଦେଉଥିଲା । ତେଣୁ ସେ ଦୁହେଁ ଲୋକଟିକୁ ଭଲ ପାଉଥିଲେ । ଦରକାର ବେଳେ ଗଧ ତାର ବୋଝ ବୋହୁଥିଲା ଓ କୁକ୍‌କୁର ବାଡରେ ଘର ଜଗୁଥିଲା । ଅଚିହ୍ନା ଲୋକ ଦେଖିଲେ କୁକ୍‌କୁର ଭୁକି ସାବଧାନ କରି ଦେଉଥିଲା ।

ଲୋକଟିର ଏ ଦୁଇଟି ଜୀବଙ୍କ ପ୍ରତି ଭାରି ଆଦର । ଗଧ ଘାସ ଖାଉଥିବାବେଳେ ସେ ତାର ଦେହ ଆଉଁଷି ଦିଏ । ସେହିପରି ସେ କେବେ କେବେ କୁକ୍‌କୁରକୁ ଆଦର କରି ତାକୁ କୋଳରେ ବସାଏ; ତାର ଦେହ ଆଉଁଷି ଦିଏ ।

ଦିନେ ଗଧ ବିଚାରକଲା, "ଖାଉନ୍ଦ ଏ କୁକ୍‌କୁରକୁ ଯେତେ ସ୍ନେହ କରୁଛନ୍ତି, ମୋତେ ସେତେ ସ୍ନେହ କରୁନାହାନ୍ତି । କୁକ୍‌କୁରଟା ଦିନଯାକ ଅଗଣାରେ ଖେଳି ବୁଲୁଛି । ଖାଉନ୍ଦଙ୍କ କୋଳକୁ ଡେଇଁ ପଡିଲାକ୍ଷଣି ସେ ତାକୁ ଧରି ଗେଲ କରୁଛନ୍ତି । କୁକ୍‌କୁର ତାଙ୍କ ମୁହଁକୁ ଚାଟୁଛି । ମୁଁ ତାରି ପରି ଖେଳବୁଲ କରି ତାଙ୍କ କୋଳକୁ ଡେଇଁ ପଡ଼ିଲେ ସେ ମୋତେ ମଧ୍ୟ କୋଳରେ ବସାଇ ମୋ ଦେହ ଆଉଁଷିବେ ।"

ଏହିପରି ବିଚାରି ସେ ଦିନେ ଅଗଣାଯାକ ବୁଲିବାକୁ ଲାଗିଲା । ଖାଉନ୍ଦ ଚଉକି ଉପରେ ବସିଥିବାର ଦେଖି ସେ ଡେଇଁ ଡେଇଁ ତାଙ୍କ ପାଖକୁ ଗଲା ଓ ହଠାତ୍ ଆଗ ଗୋଡ଼ ଦୁଇଟା ତାଙ୍କ ଛାତି ଉପରେ ଲଗାଇଦେଇ ତାଙ୍କ ମୁହଁକୁ ଚାଟିବାକୁ ବସିଲା । କିନ୍ତୁ

ଖାଉନ୍ଦ ତାଙ୍କୁ ଆଦର ନକରି ହଠାତ୍ ଉଠିଗଲେ ଓ ଗୋଟାଏ ବାଡ଼ିରେ ପିଟିପିଟି ତାଙ୍କୁ ଖୁଣ୍ଟରେ ବାନ୍ଧି ଦେବାପାଇଁ ଜଣେ ଚାକରଙ୍କୁ କହିଲେ । ଚାକର ତାଙ୍କୁ ଖୁଣ୍ଟରେ ବାନ୍ଧିଦେଇ ଯଥେଷ୍ଟ ମାଡ଼ ଦେଲା ।

ଗଧ କାନ୍ଦି କାନ୍ଦି କହିଲା, "ମୁଁ କୁକ୍କୁର ପରି ଖେଳି ବୁଲି ଖାଉନ୍ଦଙ୍କ କୋଳରେ ବସିବାକୁ ଗଲି; ତାଙ୍କ ମୁହଁ ଚାଟିଲି । କିନ୍ତୁ ତାର ଓଲଟା ଫଳ ପାଇଲି । ସେ ମୋ ଚାଲିଚଳଣରେ ସନ୍ତୁଷ୍ଟ ନ ହୋଇ ମୁଁ ଦୁଷ୍ଟ, ଅଭଦ୍ର ବୋଲି ମନେକଲେ; ମାଡ଼ ଦେଇ ଛାଡ଼ିଦେଲେ । ଆଗେ ଟିକିଏ ହେଲେ ଆଉଁଷି ଦେଉଥିଲେ । ଏବେ ତା ମଧ୍ୟ ଗଲା । ଏଣିକି ମୁଁ ଆଗ ଭଳି ଚଳିବି । କୁକ୍କୁର ଭଳି ହେବାକୁ ଚେଷ୍ଟା କରିବି ନାହିଁ ।"

ନିଜ କରମେ ଦିଅ ମନ,
ପର କରମ ଦୁଃଖ ଜାଣ ।

---

## ପରର ଅନଷ୍ଟ କର ନାହିଁ ।

ଦିନେ ଖୁବ୍ ଶୀତ ହୋଇଥାଏ । ଗୋଟିଏ ସାପ ଶୀତରେ ଅଥୟ ହୋଇ ଆଶ୍ରୟ ଖୋଜି ବୁଲିଲା । କିଛି ଦୂରରେ ଗୋଟିଏ କମାରଶାଳ ଥିଲା । କମାରଶାଳରେ ନିଆଁ ଥିବାରୁ ଘରଟି ବେଶ୍ ଉଷୁମ ହୋଇଥିଲା । ସାପ ସେହି ଘରେ ପଶିଗଲା । ତାର ଶୀତ ଛାଡ଼ିଗଲା । ସେ ଘରଯାକ ବୁଲି କିଛି ଖାଇବା ପାଇଁ ଖୋଜିଲା । ଘର ଭିତରେ କମାରର ହାତହତିଆର ପଡ଼ିଥିଲା । ଗୋଟିଏ ଛୁରୀ

ଦେଖି ସେ ଏହାକୁ ଖାଉଥିବା ଜନ୍ତୁ ମନେକରି କାମୁଡ଼ିଲା । ଦା ଫାଳିରୁ ରକ୍ତ ବାହାରିଲା । କିନ୍ତୁ ସେ ମନେକଲା ଯେ ତାହାରୁ ରକ୍ତ ବାହାରୁଛି । ତେଣୁ ସେ ତାହାକୁ ଆହୁରି ଜୋର୍‌ରେ କାମୁଡ଼ିବାକୁ ଲାଗିଲା ।

ସେ ଯେତିକି ବେଶି କାମୁଡ଼ିଲା, ସେତିକି ବେଶି ରକ୍ତ ବାହାରିଲା । ଏହିପରି କେତେବେଳଯାଏ କାମୁଡ଼ି କାମୁଡ଼ି ସାପ ହାଲିଆ ହୋଇ ପଡ଼ିଲା । ସେ ତୁଣ୍ଡଟାକୁ ଫାଳିରୁ ବାହାର କରି ପକାଇ ଦେଲା । ସାପର ପାଟି ପୋଡ଼ି ଉଠିଲା । ସେ ଏତେବେଳକୁ ବୁଝିଲା ଯେ ସେ ଯାହାକୁ କାମୁଡ଼ୁଥିଲା, ତାର କିଛି କ୍ଷତି ହୋଇନାହିଁ । କ୍ଷତି ହୋଇଛି ତାରି ନିଜର । ତା ପାଟି ଖଣ୍ଡିଆ ହୋଇ ଯାଇଛି ଓ ସେଥିରୁ ରକ୍ତ ବାହାରୁଛି । କେତେ ଦିନରେ ଘାଆ ଶୁଖିବ, କେଜାଣି !

ଯେହୁ ଚିନ୍ତଇ ପରମନ୍ଦ,
ତା ମନ୍ଦ ଘଟାନ୍ତି ଗୋବିନ୍ଦ ।

---

## ଗୁଣ ଚିହ୍ନେ ଗୁଣୀ

ଥରେ ଗୋଟିଏ କୁକ୍‌କୁଡ଼ା ଆହାର ଖୋଜୁଥିଲା । ପଡ଼ିଆପାଖ ଝାଣ୍ଟରେ କିମ୍ବା କୌଣସିଠାରେ ପୋକଟିଏ ଦେଖିଲେ ସେ ତାକୁ ଗିଳି ଦେଉଥିଲା । ଅନେକ ବେଳଯାଏ ଏହିପରି ବୁଲି ବୁଲି ସେ ଯେଉଁ ପୋକଜୋକ ପାଇଲା, ସେଥିରେ ତାର ପେଟ ଆଦୌ ପୂରିଲାନାହିଁ । ଏଣେ ବେଳ ବୁଡ଼ି ଆସୁଛି । ଅନ୍ଧାର ହୋଇଗଲେ ସେ ଆଉ ପୋକ

ଖୋଜ ପାଇବ ନାହିଁ । ତେଣୁ ସେ ତରବର ହୋଇ ମାଟି ଖୁମ୍ପିବାକୁ ଲାଗିଲା କିନ୍ତୁ ତାକୁ ଗୋଟିଏ ହେଲେ ପୋକ ମିଳିଲା ନାହିଁ ।

ଏହି ସମୟରେ ସେ ଗୋଟିଏ ଜାଗାରୁ ମାଟି ଖୁମ୍ପିବାମାତ୍ରେ ଗୋଟାଏ ମୁକ୍ତା ତାହାକୁ ବାହାରି ପଡ଼ିଲା । ଏହା ଖୁବ୍ ଚକ୍ ଚକ୍ ଦିଶୁଥିଲା । ପ୍ରଥମେ ସେ ଏହାକୁ ଗୋଟାଏ ପ୍ରକାର ଧଳା ପୋକ ମନେ କରିଥିଲା । କିନ୍ତୁ ଦୁଇ ତିନିଥର ଚୁମ୍ପିବାପରେ ଜାଣିଲା ଯେ ଏହା ପୋକ ନୁହେଁ, ଏକପ୍ରକାର ମୂଲ୍ୟବାନ୍ ପଥର ।

ସେ ହତାଶ ହୋଇ ମୁକ୍ତାଟିକୁ ଗୋଡ଼ରେ ଆଡ଼େଇ ଦେଇ କହିଲା, "ମୋ ଭାଗ୍ୟ ଖରାପ; ଗୋଟାଏ ପୋକ କି ଧାନ ହୋଇ-ଥିଲେ ମୋର କିଛି ଉପକାର ହୋଇଥାନ୍ତା । ମୁକ୍ତା ଯେତେ ମୂଲ୍ୟବାନ୍ ହୋଇଥିଲେ ସୁଦ୍ଧା ସେଥିରେ ମୋର କି ଲାଭ ? କୌଣସି ଲୋକ ଏହାକୁ ପାଇଥିଲେ ଖୁସି ହୋଇଥାନ୍ତା; କିନ୍ତୁ ମୋର ଆନନ୍ଦର କିଛି ହେଲେ କାରଣ ନାହିଁ । ମୋ ପକ୍ଷରେ ଏହା ଆଦୌ ଦରକାରୀ ନୁହେଁ ।"

ନିର୍ଗୁଣ ଗୁଣର ଆଦର
ନ କରେ, ଏହା ଜାଣ ସାର ।

---

## ପବନ ଓ ସୂର୍ଯ୍ୟ

ଦିନେ ପବନ ଓ ସୂର୍ଯ୍ୟଙ୍କ ଭିତରେ ବିବାଦ ହେଲା । ସୂର୍ଯ୍ୟ କହିଲା, "ମୁଁ ବେଶି ବଳବାନ୍ ।" ପବନ କହିଲା, "ମୁଁ ବେଶି ବଳବାନ୍ ।"

ଦୁହିଁଙ୍କ ଭିତରେ କଳି ଲାଗିବାରୁ ପବନ କହିଲା, "ମୋର ବଳ କଥା କାହାକୁ ଅଜଣା ? ଯେତେ ବଡ଼ ଗଛ ହୋଇଥାଉ, ମୁଁ ତାକୁ ଭାଙ୍ଗି ତଳେ ପକାଇଦିଏ । ସମୁଦ୍ର ଉପରେ ମୁଁ ଜୋର୍‌ରେ ଗଲାବେଳେ ପର୍ବତ ପରି ଲହଡ଼ି ଉଠେ । ମୁଁ ଯେ ତୁମଠାରୁ ଅଧିକ ବଳବାନ୍ ଏଥିରେ ସନ୍ଦେହ ନାହିଁ ।"

ସୂର୍ଯ୍ୟ କହିଲା, "ତୁମେ ବଡ଼ ବଡ଼ ଗଛ ଭାଙ୍ଗି ପକାଅ, ସମୁଦ୍ରରେ ଲହଡ଼ି ସୃଷ୍ଟି କର, ଏକଥା ସତ । କିନ୍ତୁ ଏଥିରେ ଗର୍ବର କାରଣ ନାହିଁ କିମ୍ବା ତୁମର ବଳ ମୋଠାରୁ ବେଶି ବୋଲି ପ୍ରମାଣିତ ହେଉନାହିଁ । ମୁଁ କିରଣଦ୍ୱାରା ଲୋକମାନଙ୍କୁ ଆନନ୍ଦ ଦିଏଁ; ଗଛର ଫୁଲଫଳମାନଙ୍କୁ ବଢ଼ାଏଁ ।"

ଦୁହିଁଙ୍କ ଭିତରେ ଅନେକ ବେଳଯାଏ ବାଦବିବାଦ ଲାଗିଲା । କେହି ଅନ୍ୟକୁ ବେଶି ବଳବାନ୍ ବୋଲି ସ୍ୱୀକାର କଲା ନାହିଁ । ଏହି ସମୟରେ ଜଣେ ବାଟୋଇ ଯାଉଥିବାର ଦେଖି ପବନ କହିଲା, "ଆମେ ଦୁହେଁଯାକ ଏଇ ବାଟୋଇ ଉପରେ ଆପଣା ଆପଣା ବଳ ଦେଖାଇବା । ଯିଏ ତା ଦେହରୁ କୁରୁତା ବାହାର କରିବ, ସେ ବେଶି ବଳୁଆ ବୋଲି ଜଣାଯିବ ।"

ସୂର୍ଯ୍ୟ ଏ ପ୍ରସ୍ତାବରେ ରାଜି ହୋଇଗଲା ।

ପ୍ରଥମେ ପବନ ଲୋକଟିର ଜାମା ଉଡ଼ାଇ ନେବାକୁ ଚେଷ୍ଟା କଲା । ପବନ ଟିକିଏ ବେଗରେ ବୋହିବାରୁ ବାଟୋଇ ସବୁ ବୋତାମ ବନ୍ଦ କରିଦେଲା । ପବନ ତାର ବେଗ ବଢ଼ାଇବାକୁ ଲାଗିଲା । ଲୋକଟିକୁ ବେଶି ଥଣ୍ଡା ଲାଗିଲା । ସେ ତା ଥଳୀରୁ ଆଉ ଗୋଟିଏ କୁରୁତା ବାହାର କରି ପିନ୍ଧିଲା । ଏବେ ପବନ ଏତେ ପ୍ରବଳ ବେଗରେ ବୋହିଲା ଯେ ତାର ଗୋଡ଼ ସ୍ଥିର ରହିଲା ନାହିଁ । ସେ ଗୋଟିଏ ପକ୍‌କାଘର ପାଖରେ ଠିଆ ହୋଇ ଆଶ୍ରୟ ନେଲା ।

ଯେତେ ଚେଷ୍ଟା କଲେ ସୁଦ୍ଧା ପବନ ବାଟୋଇର ଦେହରୁ କୁରୁତା ବାହାର କରି ପାରିଲା ନାହିଁ ।

ଏହାପରେ ସୂର୍ଯ୍ୟର ପାଳି ପଡ଼ିଲା । ପ୍ରଥମେ ସୂର୍ଯ୍ୟ କଅଁଳିଆ କିରଣ ଦେଲେ । ପବନ ବନ୍ଦ ହୋଇ ଯାଇଥିଲା । ଲୋକଟି ପୁଣି ଚାଲିବାକୁ ଆରମ୍ଭ କଲା । ସୂର୍ଯ୍ୟ ଆସ୍ତେ ଆସ୍ତେ ଅଧିକ କିରଣ ଦେବାରୁ ସେ ପ୍ରଥମେ ଉପର କୁରୁତାଟି କାଢ଼ି ନିଜ ଥଳିରେ ରଖିଦେଇ ଚାଲିଲା । ଖରାର ତେଜ ବଢ଼ିବାକୁ ଲାଗିଲା । ବାଟୋଇର ଦେହରୁ ଝାଳ ବୋହିଲା । ସେ ରୁମାଲରେ ମୁହଁରୁ ଝାଳ ନିପାଛି ପୋଛି ଚାଲିଲା । ଗଛ ଛାଇରେ ବିଶ୍ରାମ ନେବାପାଇଁ ସେ ଚାରିଆଡ଼କୁ ଚାହିଁଲା; କିନ୍ତୁ ସେ କୌଣସି ଗଛ ଦେଖି ପାରିଲା ନାହିଁ । ତଥୁଁ ସେ ଦେହରୁ ଜାମାଟି କାଢ଼ି ପକାଇ ନିଜ ଥଳୀରେ ପୂରାଇ ଚାଲିବାକୁ ଲାଗିଲା । ଖରାର ତେଜ ଅତିଶୟ ବେଶି ହେବାରୁ ସେ ବାଟ ହାଡ଼ରେ ବସିଗଲା ।

ପବନ ହାରିଯାଇଥିବାରୁ ଲୁଚି ପଳାଇଲା ।

ବଳବାନ ଯହିଁ ହୁଅଇ ବିଫଳ
ଜ୍ଞାନୀ କଉଶଳେ ଲଭଇ ସୁଫଳ ।

---

## ଗଧିଆ ଓ କାଣ୍ଡିଆବଗ

ଦିନେ ଗୋଟିଏ ଗଧିଆ ମଲା ବାଛୁରୀଟିଏ ଆଣି ଖାଉଥିଲା । ତାକୁ ବେଶି ଭୋକ ହେଉଥିବାରୁ ସେ ତରତର ହୋଇ ଗିଳୁଥିଲା । ଦୈବାତ୍ ଖଣ୍ଡିଏ ହାଡ଼ ତା ଗଳାରେ ଲାଗି ରହିଲା । ଯେତେ

ଚେଷ୍ଟା କଲେ ସୁଦ୍ଧା ହାଡ଼ ଖଣ୍ଡିକ ଗଳାରୁ ବାହାରିଲା ନାହିଁ । ଯନ୍ତ୍ରଣାରେ ଛଟପଟ ହୋଇ ସେ ଏଣେତେଣେ ଦୌଡ଼ିଲା ।

ସେ ବଣର ଯେଉଁ ଜୀବକୁ ଦେଖିଲା, ତାକୁ କହିଲା, "ଭାଇ ମୋ ଗଳାର ହାଡ଼ ଖଣ୍ଡକ ବାହାର କରିଦିଅ । ମୁଁ ତୁମକୁ ଯଥେଷ୍ଟ ପୁରସ୍କାର ଦେବି ।" ଅନେକେ ହୃକୃତରେ ଗଳାରୁ ହାଡ଼ ବାହାର କରି ପାରିନଥାନ୍ତେ; ଯେଉଁମାନେ ପାରିଥାନ୍ତେ, ସେମାନେ ଜାଣନ୍ତି, ଗଧିଆ ଦୁଷ୍ଟ ଜୀବ । ତା ପାଟିରେ ମୁହଁ ପୂରାଇବାରେ ବିପଦ ଘଟି-ପାରେ । ତେଣୁ ସେମାନେ ତାକୁ ସାହାଯ୍ୟ କଲେ ନାହିଁ ।

ପୋଖରୀ କୂଳରେ ଗୋଟିଏ କାଣ୍ଡିଆବଗ ବସିଥିଲା । ସେ ଗଧିଆର ବିକଳ ସହିପାରିଲା ନାହିଁ । ସେ ଆସି ପଚାରିଲା, "ଗଧିଆ ଭାଇ, ଏପରି ଅଥୟ ହେଲେ କଅଣ ହେବ ? ତୁମେ ଧୀର ହୋଇ ବସିଲେ ମୁଁ ତୁମ ଗଳାରୁ ହାଡ଼ଟା ବାହାର କରି ପାରିବି ।" ଗଧିଆ କହିଲା, "ତୁମେ ମୋର ଏତିକ ଉପକାର କଲେ ମୁଁ ତୁମକୁ ଯଥେଷ୍ଟ ପୁରସ୍କାର ଦେବି । ତାହାଛଡ଼ା ଜୀବନ ଥିବାଯାକେ ତୁମ ପାଖେ କୃତଜ୍ଞ ହୋଇ ରହିବି ।"

ଗଧିଆ ଚୁପ୍‌ କରି ବସିଲା । କାଣ୍ଡିଆବଗ ତା ପାଟିବାଟେ ଲମ୍ବ ଥଣ୍ଟ ପୂରାଇ ଗଳାରୁ ହାଡ଼ ଖଣ୍ଡକ ବାହାର କରି ଆଣିଲା । ଗଧିଆ ଆନନ୍ଦରେ ନାଚିବାକୁ ଲାଗିଲା । ଏହି ସମୟରେ ବଗ କହିଲା, "ମୋର ପୁରସ୍କାର ?"

ଗଧିଆ ରାଗିଯାଇ କହିଲା, "ତୋଠାରୁ ବଳି ଓଲୁ କେହି ନାହିଁ । ଯାଆ, ପଳା ।"

କାଣ୍ଡିଆବଗ କହିଲା; "ତୁମେ ପରା ପୁରସ୍କାର ଦେବାକୁ କହିଥିଲ ?"

ଗଧିଆ ଉତ୍ତର କଲା, "କହୁଥିଲ ସତ ! କିନ୍ତୁ ତୁ ଯେତେବେଳେ ମୋ ପାଟି ଭିତରେ ଥଣ୍ଟ ପୂରାଇ ପୁଣି ଜୀବନ ଧେନି ଫେରି ଆସିଛୁ, ସେତିକି କଅଣ ଯଥେଷ୍ଟ ପୁରସ୍କାର ନୁହେଁ । ଆହୁରି ପୁରସ୍କାର ଆଶା କରୁଛୁ ?"

କାଣ୍ଡି ଆବଗ ଚୁପ୍ କରି ଚାଲିଗଲା ।
ଦୁଷ୍ଟର କଲେ ଉପକାର
ନ ମିଳେ କିଛି ପୁରସ୍କାର ।

---

# ବାଟୋଇ ଓ ଭାଲୁ

ଥରେ ଦୁଇଜଣ ଲୋକ ସଙ୍ଗ ହୋଇ ଗୋଟିଏ ବଣ ଭିତରେ ଯାଉଥିଲେ । ଦୁହିଁଙ୍କ ଭିତରେ ଖୁବ୍ ବନ୍ଧୁତା ଥିଲା । ଦୁହିଁଙ୍କୁ ଭିତରୁ ଜଣେ କହିଲା, "ମଇତ, ଏ ବଣରେ ବାଘ, ଭାଲୁ ଅଛନ୍ତି ବୋଲି ଶୁଣିଛି । ଯଦି କୌଣସି ହିଂସ୍ରଜନ୍ତୁ ଆସେ କଅଣ କରିବା ?" ଅନ୍ୟ ଜଣକ ଉତ୍ତର କଲା, "ଆମେ ଦୁହେଁ ମିଶି ତାକୁ ତଡ଼ି ଦେବା ।" ଠିକ୍ ସେତିକିବେଳକୁ ଗୋଟିଏ ଭାଲୁ ଦେଖାଗଲା । ହିଂସ୍ରଜନ୍ତୁ ଆସିଲେ ମିଶି ତଡ଼ିଦେବ ବୋଲି କହୁଥିଲା, ସେ ମୁହୂର୍ତ୍ତକ ଭିତରେ ଗୋଟାଏ ଗଛ ଉପରକୁ ଚଢ଼ିଗଲା । ଅନ୍ୟ ଜଣକ ଶୁଣିଥିଲା ଯେ ଭାଲୁ ମଲାମଣିଷ ଖାଏନାହିଁ । ସେ ତତ୍‌କ୍ଷଣାତ୍ ତଳେ ମଲାପରି ଶୋଇ ପଡ଼ିଲା, ନିଶ୍ୱାସ ବନ୍ଦ କରି ରହିଲା । ଭାଲୁ ତା ପାଖକୁ ଆସି ତାକୁ ଶୁଙ୍ଘିଲା ଓ ଲୋକଟି ମରିଛି ବୋଲି ମନେକରି ବଣ ଭିତରକୁ ଚାଲିଗଲା ।

କିଛି ସମୟ ପରେ ଅନ୍ୟ ଜଣକ ଗଛରୁ ଓହ୍ଲାଇ ଆସି କହିଲା, "ଓଃ ! ଆମେ ଅଳ୍ପକେ ରକ୍ଷା ପାଇଗଲେ । ଭାଲୁ ତୁମ କାନ ପାଖରେ କଅଣ କହୁଥିଲା କି ?"

ଲୋକଟି ଉତ୍ତର କଲା, "ହଁ ଭାଲୁ ମୋତେ କହିଲା—ଯେଉଁ ଲୋକ ବିପଦ ବେଳେ ବନ୍ଧୁକୁ ଛାଡ଼ି ପଳାଏ, ତାକୁ ଜୀବନରେ କେବେହେଲେ ବିଶ୍ୱାସ କରିବ ନାହିଁ । ଏଭଳି ଲୋକଙ୍କ ସାଥିରେ ରହିଲେ ବିପଦରେ ପଡ଼ିବାକୁ ହେବ ।"

ବିପଦେ ଯେହୁ ହୁଏ ସଖା
ବନ୍ଧୁପଣରେ ସେହୁ ଲେଖା ।

---

## ଗର୍ବର ଫଳ

ଗୋଟିଏ ବେଙ୍ଗୁଲି ପୋଖରୀରେ ରହୁଥିଲା । ପୋଖରୀ-କୂଳରେ ଗୋଟିଏ ଗାତରେ ତାର ଘର । ବେଳବେଳେ ସେ ଦୂରକୁ ଚରିବୁଲି ଯାଏ; ସନ୍ଧ୍ୟାବେଳକୁ ନିଜ ଘରକୁ ଫେରିଆସେ ।

ବେଙ୍ଗୁଲି ଡିମ୍ବ ଦେଲା; ଡିମ୍ବରୁ ଗୁଡ଼ାଏ ଛୁଆ ବାହାରିଲେ । କ୍ରମେ ସେମାନେ ବଡ଼ି ପହଁରି ଶିଖିଲେ, ଡେଇଁଡେଇଁ ପୋଖରୀ-କୂଳରେ ଥିବା ପଡ଼ିଆରେ ଚରିବୁଲିଲେ । ଖାଇପିଇ ସାରି ସେମାନେ ମଧ୍ୟ ସନ୍ଧ୍ୟାବେଳକୁ ଘରକୁ ଯାଉଥିଲେ ।

ଦିନେ ବେଙ୍ଗୁଲି ଦୂରକୁ ଚରିବାପାଇଁ ଯାଇଥିଲା । ଛୁଆ ବେଙ୍ଗମାନେ ପଡ଼ିଆରେ ଖେଳବୁଲି ଚରୁଥିଲେ । ସେହି ପଡ଼ିଆରେ ଗୋଟିଏ ବଳଦ ମଧ୍ୟ ଚରୁଥିଲା । ଦୈବାତ୍ ବଳଦ ଗୋଡ଼ତଳେ

ଗୋଟିଏ ବେଙ୍ଗଛୁଆ ଚପି ହୋଇ ମରିଗଲା । ଅନ୍ୟ ଛୁଆମାନେ ଭୟରେ ପଳାଇଯାଇ ଘରେ ଲୁଚିଲେ ।

ସନ୍ଧ୍ୟାବେଳକୁ ମାଆ ଘରକୁ ଆସିବାରୁ ଛୁଆ ବେଙ୍ଗମାନେ ଏକସ୍ୱରରେ କହିଲେ, "ମାଆ ଲୋ ମାଆ, ଆଜି ଆମର ଗୋଟିଏ ଭାଇ ମରିଯାଇଛି । ଗୋଟାଏ ପ୍ରକାଣ୍ଡ ଜନ୍ତୁ ତା ଉପରେ ଗୋଡ଼ ପକାଇ ଦେବାରୁ ଆମ ଭାଇ ମରିଗଲା ।"

ବେଙ୍ଗୁଲି ପଚାରିଲା, "ସେ କେଉଁ ଜୀବ ? କଅଣ ମୋଠାରୁ ବଡ଼ ?"

ଛୁଆମାନେ କହିଲେ, "ହଁ ମା, ତୋଠାରୁ ଖୁବ୍ ବଡ଼ ।"

ବେଙ୍ଗୁଲି ନିଜ ଦେହକୁ ଫୁଲାଇଦେଇ କହିଲା, "କଅଣ ଏଡ଼କ ବଡ଼ ?"

ଛୁଆମାନେ କହିଲେ, "ନାଁ, ଏହାଠାରୁ ଆହୁରି କେତେ ବଡ଼ ।"

ବେଙ୍ଗୁଲି ବାରମ୍ବାର ନିଜ ଦେହକୁ ଫୁଲାଇ ପଚାରିଲା ଓ ପ୍ରତିଥର ଛୁଆମାନେ କହିଲେ, ସେ ଜନ୍ତୁଟା ଆହୁରି ବଡ଼ ।

ଶେଷରେ ସେ ନିଜ ଦେହକୁ ଏତେଦୂର ଫୁଲାଇଦେଲା ଯେ ତାର ପେଟ ଫାଟିଗଲା ଓ ତାର ପ୍ରାଣ ବାହାରିଗଲା ।

ଯାହାକୁ ଯେମନ୍ତ କରିଛି ବିଧି
ତହିଁରୁ ଅନ୍ୟଥା କେବେ ନୁହଇ ।
ବଡ଼ ହେବା ପାଇଁ କରେ ଯେ ମନ
ବୃଥା ଗର୍ବେ ସେହୁ ହାରେ ଜୀବନ ।

---

# ଘୋଡ଼ା ଓ ତାର ଛାଇ

ଖରାଦିନ । ଜଣେ ବାଟୋଇ ଚାଲିଚାଲି ଥକିପଡ଼ିଲା । ଶେଷକୁ ଆଉ ଚାଲିବାକୁ ତାର ଦେହରେ ବଳ ରହିଲା ନାହିଁ । ପାଖରେ ଗୋଟିଏ ଗାଁ ଦେଖି ସେଠାରୁ ସେ ଗୋଟିଏ ଘୋଡ଼ା ଭଡ଼ା ନେଲା । କଥା ହେଲା, ବାଟୋଇ ଆର ଗାଆଁ ପର୍ଯ୍ୟନ୍ତ ଘୋଡ଼ାରେ ବସି ଯିବ ଓ ସେଥିପାଇଁ ଭଡ଼ା ଦେବ । ଘୋଡ଼ାର ମାଲିକ ସେଠାରୁ ତାର ଘୋଡ଼ା ନେଇ ଆସିବ । ବାଟୋଇ ଘୋଡ଼ାରେ ବସି ଗଲା ଓ ଘୋଡ଼ାର ମାଲିକ ଚାଲିଚାଲି ଗଲା ।

ବେଳକୁବେଳ ଖରା ବଢ଼ିଲା । ବାଟୋଇ ଏତେ ହାଲିଆ ହୋଇପଡ଼ିଲା ଯେ ଘୋଡ଼ା ଉପରେ ବସି ଯିବାକୁ ମଧ୍ୟ ତାକୁ କଷ୍ଟ ହେଲା । ଏଣେ ଖରାରେ ମୁଣ୍ଡ ପୋଡ଼ି ଯାଉଥାଏ, ଦେହ ଝାଳରେ ସର୍‌ସର ହୋଇଯାଉଥାଏ । ଶେଷରେ ସେ ଘୋଡ଼ାରୁ ଓହ୍ଲାଇପଡ଼ି କିଛି ସମୟ ବିଶ୍ରାମ ନେବାକୁ ସ୍ଥିର କଲା ।

ଘୋଡ଼ା ଛିଡ଼ା ହୋଇ ରହିଲା ଓ ବାଟୋଇ ତାର ଛାଇରେ ବସିଲା । ଘୋଡ଼ାର ମାଲିକ ଦେଖିଲା, ବାଟୋଇ ଘୋଡ଼ାର ଛାଇରେ ନିଶ୍ଚିନ୍ତରେ ବସିଛି ଓ ସେ ଖରାରେ ଛିଡ଼ା ହୋଇଛି । ସେ ରାଗିଯାଇ ବାଟୋଇକୁ କହିଲା, "ଏଠୁ ଉଠିଯାଅ; ମୁଁ ଛାଇରେ ବସିବି । ମୁଁ ଘୋଡ଼ାପାଇଁ ଭଡ଼ା ନେଇଛି, ତା ଛାଇ ପାଇଁ ଭଡ଼ା ନେଇନାହିଁ । ତେଣୁ ତୋର କେବଳ ଘୋଡ଼ା ଉପରେ ଅଧିକାର ଅଛି; ତା ଛାଇ ଉପରେ ତୋର ଅଧିକାର ନାହିଁ । ମୁଁ ସେ ଛାଇରେ ବସିବି । ଯା, ଛାଇରୁ ଉଠ୍ ।"

ବାଟୋଇ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲା, "ତୁ ଯେତେ ଭଡ଼ା ମାଗିଲୁ ତାହା ଦେଲି । ଘୋଡ଼ାରେ ଯେବେ ମୋର ଅଧିକାର ରହିଲା, ତାର ଛାଇରେ ମଧ୍ୟ ରହିଲା । ମୁଁ ଏଠାରୁ ଉଠିବି ନାହିଁ ।"

ଛାଇ ଉପରେ କାହାର ଅଧିକାର, ଏ ବିଷୟରେ ଦୁହିଁଙ୍କ ଭିତରେ ବହୁତ ଯୁକ୍ତିତର୍କ ହେଲା । କ୍ରମେ ଦୁହେଁ ରାଗିଯାଇ ମରାମରି ହେବାକୁ ବାହାରିଲେ । ଏହି ଅବସରରେ ଘୋଡ଼ାଟା ପଳାଇଗଲା । ଦୁହେଁ କଳି କଜିଆରେ ମାତିଥିବାରୁ କେହି ଘୋଡ଼ା ଉପରେ ନଜର ରଖି ନଥିଲେ ।

ବାଟୋଇ ଦେଖିଲା ଯେ ଘୋଡ଼ା ପଳାଇଗଲାଣି । ସେ ଘୋଡ଼ାର ମାଲିକକୁ କହିଲା, "ଯା, ଏବେ ଘୋଡ଼ାର ଛାଇରେ ବସ । ଛାୟା ପାଇଁ କଳି କରୁକରୁ କାୟାକୁ ହରାଇଲୁ ।"

ମାଲିକ ବସ୍ତବ ମୁଣ୍ଡରେ ହାତଦେଇ ବସିଗଲା । କହିଲା, "ହାୟ ! ମୁଁ କି ମୂର୍ଖ ! ସାମାନ୍ୟ ଛାଇ ପାଇଁ କଳି କରିବାକୁ ଯାଇ ମୁଁ ଘୋଡ଼ାଟିକି ହରାଇଲି । ଏବେ ଛାୟା ଗଲା, ତା ସାଥିରେ କାୟା ମଧ୍ୟ ଗଲା । ମୋତେ ଉପଯୁକ୍ତ ଦଣ୍ଡ ମିଳିଛି ।"

ଛାୟାକୁ ଲୋଭ କରେ ଯେହୁ
କାଳେ ହରାଏ କାୟା ସେହୁ ।

---

## ନିର୍ବୋଧ ଗଧ

ଗୋଟିଏ ଗାଆଁରେ ଜଣେ ଭଲ କାରିଗର ଥିଲା । ସେ ସୁନ୍ଦର ଦେବମୂର୍ତ୍ତି ତିଆରି କରି ବିକୁଥିଲା । ତେଣୁ ତାର ଅନେକ ଗ୍ରାହକ ଥିଲେ ।

ଥରେ ସହରର ଜଣେ ଧନୀଲୋକ ତାଙ୍କୁ ଗୋଟିଏ ଦେବମୂର୍ତ୍ତି ତିଆରି କରିବାକୁ ବରାଦ ଦେଲେ । ସେ ମୂର୍ତ୍ତିଟି ତିଆରି କରି ସହରର ଗ୍ରାହକଙ୍କୁ ଦେବାପାଇଁ ବାହାରିଲେ । ମୂର୍ତ୍ତିଟିକୁ ତାର ଗଧ ଉପରେ ରଖି ସେ ନିଜେ ତାକୁ ଅଡ଼ାଇ ଅଡ଼ାଇ ଚାଲିଲା । ବାଟରେ ଗୋଟିଏ ଗାଆଁ ପଡ଼ିଲା । ଗାଆଁର ଲୋକେ ମୂର୍ତ୍ତିଟି ଦେଖିବାପାଇଁ ଗଧ ଚାରିପାଖେ ରୁଣ୍ଡ ହୋଇଗଲେ । ମୂର୍ତ୍ତିଟିର ଖୁବ୍ ପ୍ରଶଂସା କରି ଦେବତାଙ୍କୁ ପ୍ରଣାମ କଲେ । ଏହା ଦେଖି ଗଧ ମନେ କଲା ଯେ ଲୋକେ ତାକୁ ସାବାସ୍ କହି ପ୍ରଣାମ କରୁଛନ୍ତି । ସେ ଯେ ଗୋଟିଏ ଗଧ ଓ ବୋଝ ବୋହିବା ଯେ ତା'ର କାମ, ସେକଥା ସେ ଭୁଲିଗଲା ।

ଲୋକେ ବିଅଁ ଦର୍ଶନ କରି ଚାଲିଗଲେ; କିନ୍ତୁ ଗଧ ନିଜ ପ୍ରଶଂସାରେ ଭୋଳ ହୋଇ ଆଉ ଚାଲିଲା ନାହିଁ । ସେ ସେହିଠାରେ ଛିଡ଼ା ହୋଇ ରହି ରହିବାକୁ ଆରମ୍ଭ କଲା । କାରିଗର ଗଧର ମନକଥା ଜାଣିପାରି ତାକୁ ପିଟି ପିଟି କହିଲା, "ଆରେ ଓଲୁ, ତୋର ବୁଦ୍ଧି ଏତେ କମ୍ ବୋଲି ଜାଣି ନଥିଲି । କରେ, ଗଧକୁ କିଏ କେବେ ନମସ୍କାର କରୁଥିଲା ଦେଖିଛୁ ? ବୋଝ ବୋହି ତୁ ଚାଲିବାର କଥା । ମନେମନେ ନିଜକୁ ଏଡ଼େ ବଡ଼ ମନେ କରିବାର ଫଳ ପାଇଲୁ । ଏବେ ଚାଲ୍ ।"

ଗଧ ନିଜର ବୋକାମି ବୁଝିପାରି ଧୀରେ ଧୀରେ ଚାଲିବାକୁ ଲାଗିଲା ।

ଅଜ୍ଞାନୀ ଅବିବେକପଣେ
ନିଜକୁ ବଡ଼ ବୋଲି ମଣେ ।

# ବିପଦରେ ଧୈର୍ଯ୍ୟ ଧର

ଗୋଟିଏ କୋକଶିଆଳ ବଡ଼ ଦୁଃଖରେ ଥିଲା । ତାକୁ ଖାଇବାକୁ ମିଳୁ ନଥିଲା । ତେଣୁ ତାର ଦେହ ଶୁଖି ଯାଇଥିଲା; ବାହାରୁ ହାଡ଼ ଗଣି ହେଉଥିଲା । ସେ ଯେତେ ବୁଲିଲେ ସୁଦ୍ଧା କିଛି ଆହାର ପାଇଲା ନାହିଁ ।

କୌଣସି ଯୋକ ପାଇବା ଆଶାରେ ସେ ଗୋଟିଏ ବରଗଛ ମୂଳ ଚାଡ଼ୁଥିଲା । ଏହି ସମୟରେ ଗଛର ଗୋଟିଏ କୋରଡ଼ରେ କିଛି ଧୂଆଁ ହୋଇଥିବାର ସେ ଦେଖିଲା । ସେ ଯୋକ ଜୋକ ପାଇଁ ଗଛମୂଳ ଆଉ ନ ଚାଡ଼ି ହେହି କୋରଡ଼ ଭିତରେ ପଶିଗଲା । ଦେଖିଲା, ଗୋଟିଏ ପୁଡ଼ିଆରେ ରୁଟି ଓ ତରକାରୀ ରହିଛି । ଏହାକୁ ଦେଖି ସେ ଆନନ୍ଦରେ ବିଭୋର ହୋଇଗଲା । ସେ ଆଗପଛ ନ ବିଚାରି କୋରଡ଼ରେ ପଶି ସବୁତକ ରୁଟି ଖାଇଦେଲା ।

କୋରଡ଼ର ମୁହଁଟି ସାନ । ପଶିଲାବେଳେ କୋକଶିଆଳ ପେଟରେ କିଛି ନଥିଲା । ଦେହଟି ସରୁ ହୋଇଥିବାରୁ ସେ ସହଜରେ କୋରଡ଼ ଭିତରେ ପଶିଯାଇଥିଲା; କିନ୍ତୁ ଖାଇସାରିବା ପରେ ତାର ପେଟଟି ଫୁଲି ଯାଇଥିଲା । ତେଣୁ ସେ କୋରଡ଼ର ମୁହଁବାଟେ ବାହାରି ପାରିଲା ନାହିଁ । ତାର ମୁହଁ ଓ ଗୁଣ୍ଡ କୋରଡ଼ରୁ ବାହାରି ଆସିଲା ଓ ପେଟଟି ଲାଖି ରହିଲା । ସେ ବାହାରି ଆସିବାକୁ ଯେତିକି ଚେଷ୍ଟାକଲା, ପେଟଟି ସେତିକି ଟାଣ ହୋଇ ଲାଖି ରହିଲା ଓ ତାକୁ ବେଶି ବେଶି କଷ୍ଟ ହେଲା ।

ସେ ବିକଳ ହୋଇ ରଡ଼ିଲା । ତାର ପାଟି ଶୁଣି ପାଖରେ ଥିବା ଆଉ ଗୋଟିଏ କୋକଶିଆଳ ଦଉଡ଼ି ଆସିଲା । ସବୁ ଘଟଣା

ଜାଣିବା ପରେ ସେ କହିଲା, "ନଜର ବୋକାମିରୁ ତୁ ଏଭଳି କଷ୍ଟ ପାଉଛୁ । ଯାହାତାହା ଗିଳିଲେ ଲାଭ ନାହିଁ, ବରଂ ବିପଦ ଅଛି । କେହି ଚୋର ଖବର ଶୁଣିଲେ ଆସି ତୋତେ ପିଟି ମାରି ପକାଇବ । ଯିଏ ଖାଇବାକୁ ଏହି ରୁଟି ରଖିଥିଲା, ସେ ଆସିବା ଆଗରୁ ତୁ ପଳାଇ ପାରିଲେ ରକ୍ଷା । ତୁ ଚୁପ୍ କରି ସେହିପରି ରହିଥାଅ । କେତେ ଘଣ୍ଟା ପରେ ତୁ ଯାହା ଖାଇଛୁ, ତାହା ହଜମ ହୋଇଯିବ । ପେଟ ସରୁ ହୋଇଗଲେ ବାହାରିବାକୁ କଷ୍ଟ ହେବ ନାହିଁ । ସେତେବେଳ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଅପେକ୍ଷା କରିବା ଛଡ଼ା ତୋର ଅନ୍ୟ ଉପାୟ ନାହିଁ ।"

ବିପଦେ ଧଇର୍ଯ୍ୟ ଧାରଣ
ଅଟଇ ଜ୍ଞାନୀର ଲକ୍ଷଣ ।

## ଅତି ଲୋଭର ଫଳ

ଜଣେ ବୁଢ଼ୀର ଗୋଟିଏ ମାଈକୁକ୍କୁଡ଼ା ଥିଲା । ବୁଢ଼ୀ ତାକୁ ପ୍ରତିଦିନ ଧାନ ଓ ଗହମ ଖାଇବାକୁ ଦେଉଥିଲା । କୁକ୍କୁଡ଼ୀ ସେହିପରି ପ୍ରତିଦିନ ସକାଳେ ଗୋଟିଏ ଲେଖାଏଁ ଅଣ୍ଡା ଦିଏ । ବୁଢ଼ୀ ତାକୁ ଭାଜି ଖାଏ ।

ଏହିପରି କିଛିଦିନ ଗଲା । ଦିନେ ବୁଢ଼ୀ ବିଚାରିଲା, "ମୁଁ ଏହାକୁ ଯେତିକି ଖାଇବାକୁ ଦେଉଛି, ତାର ଦୁଇଗୁଣ ଦେବି । ତାହାହେଲେ ସେ ଗୋଟିଏ ଡିମ୍ବ ନଦେଇ ଦୁଇଟି ଡିମ୍ବ ଦେବ । ମୁଁ ଆଗପରି ଗୋଟିଏ ଖାଇବି । ଆଉଟିକୁ ନେଇ ବଜାରରେ ବିକିବି ।"

ସେ ସେହିପରି କଲା । ବେଶି ଖାଇବାରୁ କୁକ୍କୁଡ଼ୀ ମୋଟା ହୋଇଗଲା । ବୁଢ଼ୀ ବୁଝିଥାଏ, କେଉଁଦିନ ସେ ଦୁଇଟା ଅଣ୍ଡା ଦେବ । କିନ୍ତୁ ସେ ଏଣିକି ପ୍ରତିଦିନ ଗୋଟିଏ ଲେଖାଏଁ ଅଣ୍ଡା ନ ଦେଇ ଦୁଇ ତିନିଦିନ ଛଡ଼ାରେ ଗୋଟିଏ ଗୋଟିଏ ଅଣ୍ଡା ଦେଲା । ମାସେ ଦୁଇମାସ ପରେ ଆଉ ଆଦୌ ଅଣ୍ଡା ଦେଲାନାହିଁ । ବେଶି ଲୋଭ କରି ସେ ଯେଉଁ ଗୋଟିଏ ଅଣ୍ଡା ପାଉଥିଲା, ତାହାକୁ ସୁଦ୍ଧା ହରାଇଲା ।

ଯେ ଜନ ହୁଏ ଲୋଭବଶ
ମୂଳକୁ ହରାଏ ଅବଶ୍ୟ ।

---

# ବୁଦ୍ଧିର ବଳ

ଗୋଟିଏ ଗଧ ବଣପାଖ ମଡ଼ିଆରେ ଘାସ ଚରୁଥିଲା । କଅଁଳ ଦୁବଘାସ ଖାଇବାରେ ସେ ଏପରି ମଜ୍ଜିଯାଇଥିଲା ଯେ ଅନ୍ୟ କୌଣସି ଆଡ଼କୁ ତାର ନଜର ନଥିଲା ।

ଦୈବାତ୍ ସେ ମୁଣ୍ଡ ଟେକିଲାବେଳକୁ ଦେଖିଲା ଯେ ଗୋଟାଏ ବାଘ ତାକୁ ଧରିବାକୁ ଆସୁଛି । ବାଘଟା ତାର ଏତେ ପାଖକୁ ଆସି ଯାଇଥିଲା ଯେ ଦୌଡ଼ି ପଳାଇଲେ ମଧ୍ୟ ତାର ରକ୍ଷା ନଥିଲା । ସେ ଭାବିଲା, "ଦୌଡ଼ି ପଳାଇଲେ ବାଘ ଦୁଇ ଡେଇଁରେ ପାଇ ମାଡ଼ି ବସିବ; ଛିଡ଼ା ହୋଇ ରହିଲେ ମଧ୍ୟ ମାରି ଖାଇବ । ମୋ ଜୀବନରେ ଆଉ ଆଶା ନାହିଁ । ତଥାପି ଚେଷ୍ଟା କରି ଦେଖେଁ । ଦେହବଳରେ ବାଘକୁ ପାରିବି ନାହିଁ । ବୁଦ୍ଧିବଳରେ ଯଦି କିଛି ହୁଏ ।"

ଏହାପରେ ଗଧ ସେ ଖୋଟେଇ ଖୋଟେଇ ଧୀରେ ଧୀରେ ଚାଲିବାକୁ ଲାଗିଲା । ବାଘ ତା ପାଖକୁ ଲାଗି ଆସି ପଚାରିଲା, "ତୁ ଏପରି ଖୋଟେଇ ଖୋଟେଇ ଚାଲୁଛୁ କାହିଁକି ?"

ଗଧ କହିଲା, "ଆଜ୍ଞା, କଅଣ କହିବି ? କାଲି ଦଉଡ଼ୁଥିବା ବେଳେ ଗୋଟାଏ ବଡ଼ ବାଉଁଶକଣ୍ଟା ମୋ ପଛ ଗୋଡ଼ରେ ଗଳି-ଗଲା । ଯେତେ ଉପାୟ କଲି ବାହାରିଲା ନାହିଁ । ଗୋଡ଼ ପାଚି ଦରଜ ହୋଇଯିବାରୁ ଏପରି ଖୋଟେଇ ଖୋଟେଇ ଚାଲୁଛି । ତୁମେ ବୋଧ-ହୁଏ ଆହାର ଖୋଜି ଆସିଥିଲ ?"

ବାଘ କହିଲା, "ହଁ, ମୁଁ ତୋତେ ଖାଇବି ବୋଲି ବିଚାରୁଛି ।"

ଗଧ କହିଲା, "ମୋତେ ଖାଇବ ତ ଆପତ୍ତି ନାହିଁ । ଗଧ ତ ବାଘର ଆହାର ! ତେବେ ମୁଁ ଆଗରୁ ସାବଧାନ କରି ଦେଉଛି, ଗୋଡ଼ରୁ କଣ୍ଟାଟା ବାହାର କରି ନଦେଇ ମୋତେ ଖାଇବାରେ ତୁମର ବିପତ୍ତି ଅଛି । ଗୋଡ଼ର କଣ୍ଟାଟା ତଣ୍ଟିରେ ଲାଗିଲେ ତୁମର ପ୍ରାଣ ଯାଇପାରେ । ମୋର ପରାମର୍ଶ, ଆଗେ ମୋ ପଛ ଗୋଡ଼ରୁ କଣ୍ଟା କାଢ଼ିଦେଇ ମୋତେ ଖାଅ ।"

ବାଘ ଗଧ କଥାକୁ ସତ ମନେକରି ତାର ପଛ ଗୋଡ ପାଖରେ ବସିଗଲା; ଗୋଡ଼କୁ ଠିକ କଣ୍ଟା ଖୋଜିବାକୁ ଲାଗିଲା । ଏହି ସମୟରେ ଗଧ ସେହି ଗୋଡ଼ରେ ବାଘ ମୁହଁକୁ ଏକ ନାତମାରି ଦୌଡ଼ିବାକୁ ଲାଗିଲା । ସେହି ନାତରେ ବାଘର ମୁହଁ ବଙ୍କା ହୋଇଗଲା, ତୁଣ୍ଡରୁ ଗୋଟା ଦାନ୍ତ ଭାଙ୍ଗିଯାଇ ରକ୍ତ ବୋହିଲା । ତାର ମୁଣ୍ଡ ଭ୍ରମିଗଲା । ସେ ନିଜର ବୋକାମି ବୁଝିପାରି ଲଜ୍ଜିତ

ହୋଇ କହିଲା, "ମୁଁ ଗଧକୁ ନ ଖାଇ ତା ପାଖେ ଡାକ୍ତର କରିବାକୁ ଗଲି କାହିଁକି ? ଘରର ଗଧଟାଏ ମୋତେ ବୁଦ୍ଧିରେ ବଳିଗଲା, ଏକଥା କହିବି କାହାକୁ ?"

ବାଘ କାନ୍ଦି କାନ୍ଦି ତାର ଗୁହାକୁ ପଳାଇଗଲା ।

ଦେହର ବଳ ବୃଥା ହେଲେ<br>
ସିଦ୍ଧି ମିଳଇ ବୁଦ୍ଧିବଳେ ।

---

## କଣା ହରିଣ

ଗୋଟିଏ କଣା ହରିଣ ଥିଲା । ଛୁଆବେଳେ ତାର ବାଁ ଆଖିଟି ଫୁଟିଯାଇଥିଲା । ତାର ବାଁ ପାଖରୁ କାଳେ ଶିକାରି ଶର ମାରିବ ବୋଲି ସବୁବେଳେ ତାର ଭୟ ଥିଲା । ସେ ବଣରେ ନ ରହି ସମୁଦ୍ରକୂଳକୁ ଚାଲିଗଲା । ସେ ଭାବିଲା, ସମୁଦ୍ରଆଡ଼ୁ କେହି ଶର ମାରିବାର ଭୟ ନାହିଁ । ତେଣୁ ସେ କଣା ଆଖିଟିକୁ ସମୁଦ୍ର ଆଡ଼କୁ ରଖି ଘାସ ଚରୁଥିଲା । ଡାହାଣ ପାଖରୁ କେହି ଶିକାରି ଆସିଲେ ସେ ତାକୁ ଦେଖି ପଳାଇଯିବ ବୋଲି ତାର ବିଶ୍ୱାସ ଥିଲା ।

ଏହିପରି ଅନେକ ଦିନ ଗଲା । ଭାଗ୍ୟକୁ ସେ କୌଣସି ଶିକାରିର ହାବୁଡ଼େ ପଡ଼ି ନ ଥିଲା । ଦିନେ ଦଳେ ଲୋକ ନୌକାରେ ବସି କୂଳ ପାଖେ ପାଖେ ସମୁଦ୍ରରେ ଯାଉଥିଲେ । ସେମାନେ ଦେଖିଲେ ଯେ ଗୋଟିଏ ହରିଣ ସମୁଦ୍ରକୂଳରେ ଘାସ ଚରୁଛି । ଏଣେ ହରିଣ ନିଶ୍ଚିନ୍ତ ଯେ ସ୍ଥଳଭାଗରେ କୌଣସି ଶତ୍ରୁ

ନାହିଁ । ସମୁଦ୍ରରେ ଶନ୍ତ୍ର ଅତି ନିକଟରେ ଥିଲେ ମୃଗ ସେ ପାଖକୁ ଚାହିଁ ନ ଥିବାରୁ ସେ ସେମାନଙ୍କୁ ଦେଖିପାରି ନଥିଲା । ନୌକାରେ ଥିବା ଲୋକମାନଙ୍କ ମଧ୍ୟରୁ ଜଣେ ଧନୁରେ ଗୋଟିଏ ଶର ମାରିଲା; ତାହା ହରିଣ ଦେହରେ ବାଜିବାରୁ ସେ ତଳେ ପଡ଼ି ଛଟପଟ ହେଲା । ଶେଷମୁହୂର୍ତ୍ତରେ ସେ ଭାବିଲା, "ମୋର ଦୃଢ଼ ବିଶ୍ବାସ ଥିଲା ଯେ ସମୁଦ୍ରଆଡ଼ୁ ମୋର ଆପଦ ନାହିଁ । ଯଦି କେବେ କେହି ମୋତେ ଶର ମାରିବାକୁ ଆସେ, ସେ କେବଳ ମୋର ଡାହାଣ ପାଖରୁ ଆସିବ । ସେଥିପାଇଁ ମୁଁ ଭଲ ଆଖିଟି ସବୁବେଳେ ସ୍ଥଳଭାଗ ଆଡ଼କୁ ରଖି ସାବଧାନ ରହୁଥିଲି । କିନ୍ତୁ ଦୈବର ବିଡ଼ମ୍ବନା ଏପରି ଯେ ମୁଁ ଯେଉଁଠାରୁ ବିପଦ ଆଶଙ୍କା କରିଥିଲି, ସେଠାରୁ ବିପଦ ଆସିଲା ନାହିଁ । ଯେଉଁ ପାଖଟିକୁ ମୁଁ ସମ୍ପୂର୍ଣ୍ଣ ନିରାପଦ ମନେ କରିଥିଲି, ସେହିଠାରୁ ହିଁ ମୋ ଉପରକୁ ବିପଦ ଆସିଲା ।"

ଚିନ୍ତଇ ଏକ ମନେ ଜନ
ଦଇବ ଚିନ୍ତା କରେ ଆନ ।

---

## ଦୁର୍ବଳଚିତ୍ତ କାମକର

ଥରେ ଗୋଟିଏ ଛେଳିଆ ବଣ ଭିତରେ ଏଣେତେଣେ ବୁଲୁ-ବୁଲୁ ହେବାରୁ ଗୋଟିଏ କୂଅ ଭିତରେ ତଳେ ପଡ଼ିଗଲା । ସେ କୂଅରୁ ବାହାରିବାପାଇଁ ବହୁତ ଚେଷ୍ଟା କଲା; କିନ୍ତୁ ଉଠି ପାରିଲା ନାହିଁ । ବହୁତ ବେଳଯାଏ ସେ କୂଅର ପାଣିରେ ପହଁରିଲା, କିନ୍ତୁ ବାହାରି-ବାର କିଛି ଉପାୟ ଦେଖିପାରିଲା ନାହିଁ ।

କିଛି ସମୟ ପରେ ଗୋଟିଏ ଛେଳି ସେଠାରେ ପହଞ୍ଚିଲା । ସେତେବେଳକୁ ତାକୁ ଭାରି ଶୋଷ ହେଉଥିଲା । ସେ କୂଅର ପାଖକୁ ଆସି ଭିତରେ ଟେ୍ଟେବ୍ ଶବ୍ଦ ଶୁଣିଲା । ତହୁଁ ସେ କୂଅ ଭିତରକୁ ଚାହିଁ କହିଲା, "ଆରେ ବିଲୁଆ ଭାଇ, କୂଅ ଭିତରେ କଅଣ କରୁଛ ?"

ବିଲୁଆ ଦେଖିଲା, ବେଶ୍ ସୁଯୋଗ ଉପସ୍ଥିତ । ଛେଳିଟା କୂଅ ଭିତରକୁ ଆସିଲେ ସେ ତା ପିଠିରେ ଛିଡ଼ାହୋଇ ଉପରକୁ କୁଦି କୂଅ ବାହାରକୁ ଆସିବ । ମନ କଥା ମନରେ ରଖି ସେ କହିଲା, "ଛେଳି ଭାଇ, ତୁମେ କୁଆଡ଼େ ଆସିଛ ? ମୋତେ ଶୋଷ ହେଉଥିଲା । ମୁଁ ପାଣି ପିଇବାକୁ ଆସିଥିଲି । ଓଃ, କମିତ ଥଣ୍ଡା ପାଣି ! ଯେତେ ପିଇଲେ ବି ଛାଡ଼ି ଯିବାକୁ ମନ ହେଉନାହିଁ । ମୁଁ କେତେ ନଈ, ପୋଖରୀ, କୂଅରୁ ପାଣି ପିଇଛି, ହେଲେ ଏଭଳି ମିଠା ପାଣି କେଉଁଠି ଦେଖି ନଥିଲି । ଏତେ ଥଣ୍ଡା ଯେ ବରଫ ପଡ଼ିଲା ପରି ଲାଗୁଛି ।"

ଛେଳି କହିଲା, "ମୋତେ ବଡ ଶୋଷ ହେଉଛି । ମୋତେ ପିଇବାକୁ ଦେବ ?" ବିଲୁଆ ହସି ହସି କହିଲା, "ଆରେ, ତୁମେ କହୁଛ କଅଣ ? ଏଠି କଅଣ ପାଣିର ଅଭାବ ଅଛି ଯେ ମୁଁ ମନା କରିବ ? ତୁମଭଳି ହଜାରେ ଛେଳି ପାଣି ପିଇଲେ ବି ସରିବ ନାହିଁ । ଚଞ୍ଚଳ ଆସ, ମନ ଇଚ୍ଛା ଯେତେ ପିଅ, ଆତ୍ମା ଥଣ୍ଡା ହୋଇ-ଯିବ । ଅପେକ୍ଷା କରି ଭାବୁଛ କଅଣ ? ଶୀଘ୍ର ଆସି ପିଅ । ଏତେ ପିଇଲା ପରେ ମଧ୍ୟ ବାହାରିଯିବାକୁ ମୋର ଇଚ୍ଛା ହେଉନାହିଁ ।"

ଛେଳି ବିଲୁଆ କଥାରେ ଭୁଲିଯାଇ ମିଠା ପାଣି ପିଇବା ଆଶାରେ କୂଅ ଭିତରକୁ ଡେଇଁ ପଡ଼ିଲା । ବିଲୁଆର ମନସ୍କାମନା ପୂର୍ଣ୍ଣ ହେଲା । ସେ ତତ୍‌କ୍ଷଣାତ୍ ଛେଳିର ପିଠି ଉପରେ ଚଢ଼ିଯାଇ

ଭୁଦାମାଣ ବାହାରକୁ ଚାଲି ଆସିଲା । ଛେଳି ଡାକ ପକାଇଲା, "ବିଲୁଆ ଭାଇ, ତୁମେ ବାହାରକୁ ଚାଲିଗଲ । ମୁଁ କଅଣ ଏକୁଟିଆ ଏ କୂଅ ଭିତରେ ରହିଥିବ ?"

ବିଲୁଆ ହସି ହସି କହିଲା, "ଛେଳି ଭାଇ, ମୁଁ ବଣକୁ ବାହାରିଲି । ତୁମେ କୂଅ ଭିତରେ ରହି ପାଣି ପିଉଥାଅ । ମୋ ମଧୁର କଥାରେ ଭୁଲିଯାଇ କୂଅକୁ ଡେଇଁ ପଡ଼ିଲ । କପଟ ବାହା-ରିବ, ସେକଥା ସେତେବେଳେ ବିଚାର କଲନାହିଁ । ଏବେ ନିଜ ବୋକାମିର ଫଳ ଭୋଗ କରୁଥାଅ ।"

ବୁଦ୍ଧିବିଚାର କରି ଯିଏ କଲେ
ପ୍ରମାଦ ନ ପଡ଼ଇ ଭଲେ ।

---

## ସିଂହ ଓ ମୂଷା

କୌଣସି ବଣରେ ସିଂହଟିଏ ଥିଲା । ଶିଘ୍ର ଶିକାର କରି କରି ସେ ହାଲିଆ ହୋଇ ଗୋଟିଏ ଗଛମୂଳେ ଶୋଇ ପଡ଼ିଲା । ସେହି ଗଛମୂଳର ଗାତ ଭିତରେ ଗୋଟିଏ ମୂଷା ରହୁଥିଲା । ସିଂହର ଘୁଙ୍ଗୁଡ଼ି ଶୁଣି ସେ ବାହାରି ଆସିଲା । ଦେଖିଲା, ଗୋଟାଏ ପ୍ରକାଣ୍ଡ ଜନ୍ତୁ ଶୋଇଛି । ସେ ଆନନ୍ଦରେ ତା ଉପରେ ଦଉଡ଼ା ଦଉଡ଼ କଲା । ଏହା ଫଳରେ ସିଂହର ନିଦ ଭାଙ୍ଗିଗଲା । ସେ ତା ଥାଆରେ ମୂଷାଟିକୁ ଧରି ପକାଇ କହିଲା, "ଜରେ ମୂଷା ! ତୁ ଏଡ଼େ ଟିକିଏ ଜୀବ । ତୋର ଏତେ ସାହସ ଯେ ମୋ ଗାତ ଉପରେ ଦଉଡ଼ୁଛୁ ? ଏହିକ୍ଷଣି ତୋର ଜୀବନ ନେବି ।"

ମୂଷା ଭୟରେ ଶି ଁ ଶି ଁ ହୋ କରି କହିଲା, "ହେ ପଶୁରାଜ, ତୁମେ ହେଉଛ ବଣର ରାଜା । ମୁଁ ନ ଜାଣି ଯେଉଁ ଦୋଷ କରିଛି, ସେଥିପାଇଁ ମୋତେ କ୍ଷମାଦିଅ । ମୋଭଳି ଶ୍ରେଷ୍ଠ ଜୀବକୁ ମାରିଲେ ତୁମର ବଡ଼ପଣ ବଢ଼ିବ ନାହିଁ। ବରଂ ମୋତେ ଛାଡ଼ିଦେଲେ ତୁମର ବଡ଼ପଣ ପ୍ରକାଶ ପାଇବ । ମୁଁ ଚିରକାଳପାଇଁ ତୁମ ପାଖେ କୃତଜ୍ଞ ରହିବି ।"

ସିଂହ ଭାବିଲା, "ପ୍ରକୃତକଥା, ମୁଁ ସିବା ହାତୀପରି ବଡ଼ ଜୀବ ମାରିଲେ ପ୍ରଶଂସା ପାଇବି ! ମୂଷାଟାଏ ମାରିଛି ବୋଲି କହିବା ମୋ ପକ୍ଷରେ ଅପମାନ ଛଡ଼ା ଆଉ କିଛି ନୁହେ ।" ଏହା ଭାବି ସେ ମୂଷାଟିକୁ ଛାଡ଼ିଦେଲା । ମୂଷା ପଳାଇ ଯାଇ ଗାତରେ ପଶିଗଲା ।

ଦିନେ ଜଣେ ଶିକାରୀ ସେହି ଗଛ ପାଖରେ ଫାଶ ବସାଇ ଥିଲା । ସିଂହକୁ ସେକଥା ଜଣା ନଥିଲା । ସେ ଆସୁ ଆସୁ ସେଥିରେ ପଡ଼ିଗଲା । ଫାଶକୁ ଛିଣ୍ଡାଇବା ପାଇଁ ସିଂହ ଛଟପଟ ହୋଇ ଗର୍ଜ୍ଜନ କଲା । ମାତ୍ର ଫାଶର ଦଉଡ଼ି ମଜବୁତ ଥିବାରୁ ଛିଣ୍ଡିଲା ନାହିଁ ।

ସିଂହର ଗର୍ଜ୍ଜନ ଶୁଣି ମୂଷା ଗାତରୁ ବାହାରି ଆସି କହିଲା, "ପଶୁରାଜ ! ଭୟର କାରଣ ନାହିଁ । ତୁମେ ଚୁପ୍ କରି ରହ । ମୁଁ ଦାନ୍ତରେ ଦଉଡ଼ି କାଟିଦେଲେ ତୁମେ ଫାଶରୁ ଉଦ୍ଧାର ପାଇବ । ତୁମେ ଦୟାକରି ମୋତେ ନ ମାରି ମୋ ଜୀବନ ରଖିଥିଲ । ମୁଁ ତୁମପାଇଁ ଏ ସାମାନ୍ୟ କାମ କରିବି ନାହିଁ ?"

ସିଂହ ଚୁପ୍ ହୋଇ ପଡ଼ି ରହିଲା । ମୂଷା ଫାଶର ଗଣ୍ଠିଗୁଡ଼ିକ ଛିଣ୍ଡାଇବାରେ ଲଗିଲା । ଫାଶ ଛିଡ଼ିଯିବାରୁ ସିଂହ ଉଦ୍ଧାର ପାଇଲା । ମୂଷା କହିଲା, "ଯେତେଡ଼ ଶ୍ରେଷ୍ଠ ଜୀବ ହେଲେ ସୁଦ୍ଧା ତାହାଠାରୁ କିଛି ଉପକାର ମିଳିପାରେ । ସେଦିନ ତୁମେ ମୋତେ ମାରିଥିଲେ

ଆଜ ତୁମର ଅବସ୍ଥା କଅଣ ହୋଇଥାନ୍ତା ? ମୋତେ ନ ମାରି ତୁମେ ଖୁବ୍ ଭଲ କରିଛ ।"

ସିଂହ କହିଲା, "ସେଥିରେ କିଛି ସନ୍ଦେହ ନାହିଁ । ଏଣିକି ମୁଁ କାହାକୁ ସାନ ବୋଲି ଘୃଣା କରିବ ନାହିଁ ।"

କାହାକୁ ନ ମଣିବ ସାନ,
ନ ନେବ କାହାର ଜୀବନ ।

---

## ମିଛ କହିବାରେ ବିପଦ

ଗୋଟିଏ ଗାଆଁଠାରୁ କିଛି ଦୂରରେ ବଣଟିଏ ଥିଲା । ଗାଆଁର ଗୋଟିଏ ପିଲା ପ୍ରତିଦିନ ମେଣ୍ଢାପଲ ନେଇ ବଣରେ ଚରଉଥିଲା । ବଣରେ ବହୁତ ହେଟାବାଘ ଥିବାର ଶୁଣାଯାଉଥିଲା । କିନ୍ତୁ ଗାଆଁ ଭିତରକୁ କେବେ ହେଟାବାଘ ଆସିବାର ଦେଖା ନ ଥିଲା ।

ପିଲାଟି ସକାଳୁ କିଛି ଖାଇଦେଇ ମେଣ୍ଢାମାନଙ୍କୁ ବଣରେ ଚରିବାକୁ ଛାଡ଼ିଦିଏ । ନିଜେ ଗଛମୂଳେ ବସି ଖେଳେ । କେବେ-କେବେ ଗଛ ଉପରେ ଚଢ଼ି ଡାଳମାଙ୍କୁଡ଼ି ଖେଳେ । ବେଳ ବୁଡ଼ି ଆସିଲେ ମେଣ୍ଢାମାନଙ୍କୁ ଏକାଠି କରି ସେ ଘରକୁ ନେଇଆସେ । ବଣ ଭିତରେ ଥିବାଯାଏ ତାକୁ ବଡ଼ ଖରାପ ଲାଗେ । ସାଙ୍ଗସାଥି କେହି ନାହିଁ । ଏକୁଟିଆ କେତେ ଖେଳିବ ? କେବେକେବେ ସେ ଗୀତ ଗାଇ ବଂଶୀ ବଜାଇ କିଛି ସମୟ କଟାଇ ଦିଏ ।

ଦିନେ ବଣରେ ଥିଲାବେଳେ ତା ମନକୁ ଗୋଟାଏ ବୁଦ୍ଧି ଆସିଲା । ସେ ଭାବିଲା, "ମୁଁ ଯେବେ ହେଣ୍ଟାବାଘ ମେଣ୍ଢା ନେଇ ଯାଉଛି ବୋଲି ଡାକ ପକାଏ, ତେବେ ଆଖପାଖର ଲୋକେ ମୋ ଡାକ ଶୁଣି ଦଉଡ଼ି ଆସିବେ । ଗୋଟାଏ ବେଶ୍ ମଜା ହେବ ।"

ଏହାପରେ ବିଚାର କରି ସେ ଡାକ ପକାଇଲା, "ହେଣ୍ଟାବାଘ ମେଣ୍ଢା ପଲରେ ପଶି ମେଣ୍ଢା ନେଉଛି । କିଏ ଅଛ, ଦଉଡ଼ି ଆସ ।" ଅଳ୍ପ ଦୂରରେ କେତେଜଣ ଲୋକ କାମ କରୁଥିଲେ । ସେମାନେ ପିଲାର ଡାକ ଶୁଣି ଠେଙ୍ଗା ବାଡ଼ିଧରି ତା ପାଖକୁ ଦୌଡ଼ି ଆସିଲେ । ପିଲାଟା ଠୋ ଠୋ ହସି କହିଲା, "ହେଣ୍ଟାବାଘ ନାହିଁ । ଖାଲି ମଜା ଦେଖିବା ପାଇଁ ମୁଁ ମିଛରେ ଡାକୁଥିଲି ।"

ଲୋକମାନେ କାମ ବନ୍ଦକରି ବୃଥା ଦୌଡ଼ି ଆସିଥିବାରୁ ପିଲା ଉପରେ ବିରକ୍ତ ହୋଇ ପୁଣି ନିଜ କାମକୁ ଫେରିଗଲେ । କିଛିଦିନ ପରେ ସତକୁ ସତ ଗୋଟାଏ ହେଣ୍ଟାବାଘ ଆସି ମେଣ୍ଢା ପଲରେ ପଶିଲା । ମେଣ୍ଢାମାନେ ଏଣେତେଣେ ଦୌଡ଼ିଲେ । ହେଣ୍ଟାବାଘ ସେମାନଙ୍କୁ ଗୋଟି ଗୋଟି କରି ମାରିବାକୁ ଲାଗିଲା । ପିଲାଟି ଆକୁଳ ହୋଇ ଡାକ ପକାଇଲା, "ହେଣ୍ଟାବାଘ ମେଣ୍ଢା ପଲରେ ପଶି ଗୋଟାକୁ ଗୋଟା ମେଣ୍ଢା ମାରିପକାଉଛି । କିଏ ଅଛ, ଦୌଡ଼ି ଆସ ।" ଲୋକେ ତାର ଡାକ ଶୁଣିଲେ; କିନ୍ତୁ ସେ ଆଗଭଳି ମଜା ଦେଖିବାପାଇଁ ଡାକୁଥିବ ଭାବି କେହି ତାକୁ ସାହାଯ୍ୟ କରିବାକୁ ଆସିଲେ ନାହିଁ ।

ହେଣ୍ଟାବାଘ ମେଣ୍ଢାମାନଙ୍କୁ ମାରି ଗୋଟାଏ ଦୁଇଟା ଖାଇ ବଣକୁ ଚାଲିଗଲା ।

ଯେହୁ କହନ୍ତି ମିଥ୍ୟାଭାଷ
ହରାଏ ସଭିଙ୍କ ବିଶ୍ୱାସ;
ଭାଷିଲେ ସେହୁ ସତ୍ୟକଥା
ଜାଣନ୍ତି ଲୋକେ ତାହା ମିଥ୍ୟା ।

---

# ପିମ୍ପୁଡ଼ି ଓ ଝିଣ୍ଟିକା

ବସନ୍ତ ଋତୁ । ଶୁଣଆଡ଼େ ସଫା ସୂର୍ଯ୍ୟକିରଣ ପଡ଼ୁଥାଏ । ଗଛମାନଙ୍କରେ ପକ୍ଷୀମାନେ ମଧୁର ସ୍ୱରରେ ଗାଉଥାନ୍ତି । ଫସଲ ଅମଳ ହେଉଥିବାରୁ ଲୋକଙ୍କ ମନରେ ଆନନ୍ଦ । ପଶୁପକ୍ଷୀ କୀଟ ପତଙ୍ଗ ସମସ୍ତେ ଆନନ୍ଦରେ ରହୁଥାନ୍ତି । କାହାରି କିଛି ଅଭାବ ନାହିଁ ।

ଗୋଟିଏ ଝିଣ୍ଟିକା ଘାସ ଉପରେ ବସି ଆନନ୍ଦରେ ଝିଁ ଝିଁ ଗାଉଥିଲା । ବେଳେବେଳେ ନେଉଇଁ ନାଚୁଥିଲା । ଭୋକ ହେଲେ ଆଖପାଖରୁ କିଛି ଖାଇଦେଇ ପୁଣି ଡେଉଁଥିଲା; ଗାଉଥିଲା ।

ଏହିପରି କେତୋଟି ଦିନ ଗଲା । ଦିନେ ସେ ବସି ଗାଉଛି, ଏହି ସମୟରେ ସେ ଗୋଟିଏ ପିମ୍ପୁଡ଼ିକୁ ଦେଖିଲା । ପିମ୍ପୁଡ଼ି ଗୋଟିଏ ଗୋଟିଏ ଚାଉଳ ନେଇ ଆପଣା ଗାତରେ ରଖୁଥାଏ । କାମ କରି କରି ସେ କ୍ଲାନ୍ତ ହୋଇ ପଡ଼ୁଥିଲା; ତଥାପି ସେ ବିଶ୍ରାମ ନେଉ ନଥିଲା । ତାହାକୁ ଦେଖି ଝିଣ୍ଟିକା କହିଲା, "ପିମ୍ପୁଡ଼ି ଭାଇ, ଟିକିଏ ଶୁଣିଯାଅ । ଏଭଳି ସୁନ୍ଦର ପାଗରେ ତୁମେ କି କାମରେ ଲାଗିଛ ?"

ପିମ୍ପୁଡ଼ି ଯାଉ ଯାଉ କହିଲା, "ଶୀତଦିନ ପାଇଁ ମୁଁ ଆହାର ସଞ୍ଚୟ ରଖୁଛି । ତୁମେ ମଧ୍ୟ ଏତିକବେଳୁ କିଛି ସଞ୍ଚୟ ରଖ । ଶୀତଦିନେ ପଦାକୁ ବାହାରି ହେବନାହିଁ । ଆହାର ମଧ୍ୟ ମିଳିବ ନାହିଁ । ଖାଦ୍ୟ ସଞ୍ଚୟ କରିସାରି ଯେତେ ଇଚ୍ଛା ଗୀତ ଗାଉଥାଅ ।"

ଝିଣ୍ଟିକା ହସି ହସି କହିଲା, "ଓଃ ! ଏଇଥିପାଇଁ ତୁମେ ଏପରି ମିହନ୍ତ କରୁଛ ? ଶୀତଦିନ କାହିଁ ଅଛି ? ସେଥି ସକାଶେ ଏତିକବେଳୁ ଚିନ୍ତା କାହିଁକି ? ଶୀତଦିନ ଆସିଲେ ସେତେବେଳ କଥା ଦେଖାଯିବ ।" ଏହା କହି ସେ ପୁଣି ନାଚିବାକୁ ଲାଗିଲା ।

ଶୀତଦିନ ଆସି ପହଞ୍ଚିଲା । ଚାରିଆଡ଼େ ବରଫ ପଡ଼ିଲା । ଜୀବଜନ୍ତୁ ପଦାକୁ ବାହାରି ପାରିଲେ ନାହିଁ । ନିଜ ନିଜ ବସା ଭିତରେ ପଡ଼ି ରହିଲେ । ପିମ୍ପୁଡ଼ି ତା ବସାରେ ଯଥେଷ୍ଟ ଚାଉଳ ସଞ୍ଚି ରଖିଥିଲା । ସେ ତାହାକୁ ଖାଇ ନିଶ୍ଚିନ୍ତରେ ରହିଲା ।

ଝିଣ୍ଟିକାର ଦୁଃଖ କହିଲେ ନ ସରେ । ତା ବସାରେ ଗୋଟିଏ ହେଲେ ଦାନା ନ ଥିଲା । ଖାଇବାକୁ ନ ପାଇ ତା ଦେହ ଶୁଖି ଗଲା । ଖରାଦିନେ ସେ କିଛି ସଞ୍ଚି ରଖି ନଥିଲା ବୋଲି ଭାରି ମନ ଦୁଃଖ କଲା । ଶେଷରେ ଦିନେ ଧୁକୁଡ଼ି ଧୁକୁଡ଼ି ପିମ୍ପୁଡ଼ି ପାଖକୁ ଯାଇ କହିଲା, "ଭାଇ, ଖାଇବା ବିନା ମୋ ପ୍ରାଣ ଯାଉଛି । ମୋତେ କିଛି ଖାଇବାକୁ ଦେଇ ମୋ ଜୀବନ ରକ୍ଷାକର । ମୁଁ କାଳେ କାଳେ ତୁମ ଉପକାର ମନେ ରଖିବି ।"

ପିମ୍ପୁଡ଼ି ତା ବସାରେ ଥାଇ କହିଲା, "ଦିନେ ମୁଁ ତୁମକୁ କହିଥିଲି, 'ଶୀତଦିନ ପାଇଁ ଆଗରୁ କିଛି ଆହାର ସଞ୍ଚି ରଖ' । ସେତେବେଳେ ତୁମେ ମୋତେ ହସରେ ଉଡ଼ାଇଦେଇ କହିଥିଲ, 'ଶୀତଦିନ ଆସିଲେ ସେତେବେଳ କଥା ଦେଖାଯିବ ।' ଖରାଦିନ-ଯାକ ଖେଳି ବୁଲୁଥିଲ; ଏବେ ଶୀତଦିନେ ଉପାସ ରହିବା ଛଡ଼ା

ତୁମର ଆଉ କଅଣ ଉପାୟ ଅଛି ? ଯାଅ, ଯାଅ; ତୁମକୁ ମୁଁ ସାହାଯ୍ୟ କରି ପାରିବ ନାହିଁ ।”

ଝିଣ୍ଟିକା ହତାଶ ହୋଇ ନିଜ ବସାକୁ ଫେରିଗଲା ।

ବେଳ୍ତ ନୋହିଲେ ସାବଧାନ
ଭୋଗିବ ଅପାର କଷଣ ।

---

## ଏକତାହିଁ ବଳ

ଗୋଟିଏ ଚାଷୀ ଥିଲା । ସେ ଭାରି ପରିଶ୍ରମୀ । ଲୋକଙ୍କ ମନ ନେଇ କାମ କରେ । ସାଇପଡ଼ିଶାମାନେ ତାକୁ ଭଲ ପାଉଥିଲେ । ସେମାନଙ୍କ ସାହାଯ୍ୟରେ ସେ ଭଲ ଫସଲ ଆମଦାନି କରୁଥିଲା । କ୍ରମେ ସେ ବୁଢ଼ା ହୋଇ ଆସିଲା; କାମ କରିବାକୁ ଅସମର୍ଥ ହେଲା ।

ଚାରି ଗୋଟି ପୁଅ ଥିଲେ । ପୁଅମାନେ ଦେଖିବାକୁ ଯେପରି ସୁନ୍ଦର, ସେହିପରି ବଳବାନ୍ । ପଡ଼ୋଶୀମାନେ କହିଲେ, “ପୁଅମାନେ ପାରିଗଲେଣି । ଏଣିକି ବୁଢ଼ା ଘରେ ବସି ମାଳି ଗଡ଼ାଇବ, ପୁଅମାନେ କାମ ଧନ୍ଦା କରି ବାପକୁ ପୋଷିବେ । ବୁଢ଼ାର ଆଉ ଚିନ୍ତା କଅଣ ?”

କିନ୍ତୁ ପ୍ରକୃତରେ ପୁଅମାନେ ଅଯୋଗ୍ୟ ଥିଲେ । ସେମାନଙ୍କ ଲାଗି ବୁଢ଼ାର ବେଶି ଚିନ୍ତା ! ସେମାନେ ଦିନରାତି ଆପଣା ଭିତରେ କଳିଗୋଳ କରୁଥିଲେ । କୌଣସି ବିଷୟରେ ସେମାନେ ଏକମନ ହୋଇ ପାରୁ ନଥିଲେ । ବାପ କୌଣସି କାମ କରିବାକୁ କହିଲେ

ପୁଅମାନେ କଳିକରି କାମଟିକୁ ଭଣ୍ଡୁର କରି ଦେଉଥିଲେ । ଥରେ ବୁଢ଼ା ଟଙ୍କା ଦେଇ ପୁଅମାନଙ୍କୁ ଗୋଟାଏ ବଳଦ କିଣିବାପାଇଁ ପଠାଇଲା । ହାଟରେ ଅନେକ ବଳଦ ଥିଲେ । କିନ୍ତୁ ଜଣେ କହିଲା, କାଳିଆ ବଳଦ ନେବା; ଆଉ ଜଣେ କହିଲା, ଧଉଳା ନେବା; ଆଉ ଜଣେ କହିଲା, ନାହିଁ ଧଳା; ଆଉ ଜଣେ କହିଲା, କାଳିଆ ବଳଦ ଭଲ । ଶେଷରେ ଏହି ରଙ୍ଗ ବିଷୟରେ କଳି କରି କରି ବଳଦ ନ କିଣି ଫେରିଆସିଲେ ।

ପ୍ରତି ବିଷୟରେ ଏହିପରି କଳି ହେଉଥିବାରୁ ବୁଢ଼ା ମନରେ ଆଦୌ ଶାନ୍ତି ନଥିଲା କି ପୁଅମାନେ କୌଣସି କାମ କରିପାରୁ ନଥିଲେ । ସେମାନଙ୍କୁ ଶିକ୍ଷା ଦେବାପାଇଁ ଦିନେ ସେ ଗୋଟିଏ ଉପାୟ କଲା ।

ଗୁଡ଼ାଏ କାଠି ଏକାଠି ବାନ୍ଧି ସେ ପୁଅମାନଙ୍କୁ ଜଣ ଜଣ କରି ଡାକି କହିଲା, "ଏ କାଠି ବିଡ଼ାଟିକୁ ଭାଙ୍ଗି ଦେ ।" ପ୍ରତ୍ୟେକେ ପ୍ରାଣପଣେ ଚେଷ୍ଟା କଲେ; କିନ୍ତୁ କେହି ଭାଙ୍ଗି ପାରିଲେ ନାହିଁ । ତହୁଁ ବୁଢ଼ା ପୁଅମାନଙ୍କୁ ବସାଇ ବିଡ଼ାଟିକୁ ଫିଟାଇ ଦେଲା ଓ ଜଣକୁ ଖଣ୍ଡିଏ ଖଣ୍ଡିଏ ଦେଇ ଭାଙ୍ଗିବାକୁ କହିଲା । ପୁଅମାନେ ଅତି ସହଜରେ କାଠିଟିକୁ ଭାଙ୍ଗିଦେଲେ । ବୁଢ଼ା ସେମାନଙ୍କୁ ବୁଝାଇ କହିଲା, "ଦେଖିଲ ତ, ଖଣ୍ଡିଏ ଖଣ୍ଡିଏ କାଠି ଅଲଗା ଥିଲାବେଳେ ତାକୁ ଭାଙ୍ଗିଦେବା କେଡ଼େ ସହଜ । କିନ୍ତୁ ସେଇ କାଠିଗୁଡ଼ିକ ଏକାଠି ହେଲେ ବିଡ଼ାଟିକୁ କେହି ଭାଙ୍ଗିପାରିବେ ନାହିଁ । ସେହିପରି ତୁମେ ଏକମନ ହୋଇ କାର୍ଯ୍ୟ କଲେ କେହି ତୁମର କିଛି କରିପାରିବେ ନାହିଁ । ତୁମେମାନେ ସବୁ କାର୍ଯ୍ୟ ସୁରୁଖୁରୁରେ କରିପାରିବ । ଆପଣା ଆପଣା ଭିତରେ କଳି କଲେ ଯେ କେହି ତୁମର ଅନିଷ୍ଟ କରିପାରିବ; ତୁମେମାନେ ଯେ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହେବ ନାହିଁ ।"

ସେହିଦିନଠାରୁ ପୁଅମାନେ ମିଳିମିଶି କାର୍ଯ୍ୟ କଲେ । କୁଟୁମ୍ବଟି ସୁଖରେ ଚଳିଲା ।

ଏକତା ଅଟେ ମହା ବଳ
ସେ ବଳେ ଜଣ ଭୂମଣ୍ଡଳ ।

---

## ଭୁଲରୁ ଶିକ୍ଷା

ଜଣେ ଲୋକର ଗୋଟିଏ କୁକ୍କୁର ଥିଲା । ଦିନେ ସେ ପକ୍କାଘର ବାହାର ବାରଣ୍ଡାରେ ଶୋଇଥିଲା । ଏହି ସମୟରେ ଗୋଟିଏ ହେଟାବାଘ ତାହାକୁ ଦେଖି ଖାଇବାକୁ ଆସିଲା । କୁକ୍କୁର ଜାଣିପାରିଲା ଯେ ମୁହୂର୍ତ୍ତକ ଭିତରେ ହେଟାବାଘ ତାକୁ ମାରି ଖାଇବ । କିନ୍ତୁ ସେ ଜୀବନର ଆଶା ଛାଡ଼ି ନଦେଇ ଗୋଟାଏ ଫନ୍ଦି କଲା । ସେ ଉଠିପଡ଼ି କହିଲା, "ମୁଁ ଜାଣେ ତୁମେ ମୋତେ ଖାଇବାକୁ ଆସିଛ । ସେଥିରେ ମୋର ଦୁଃଖ ନାହିଁ । ତୁମେ ଖାଇବ ବୋଲି କୁକ୍କୁରର ଜନ୍ମ । କିନ୍ତୁ ଦେଖ, ମୋ ଦେହ କେଡ଼େ ପତଳା । ମୋ ଦେହରେ ମାଂସ ନାହିଁ । ସେଥିରେ ତୁମ ପେଟର କଣେ ହେଲେ ପୂରିବ ନାହିଁ । ଆଜ ମୋ ଖାଉନ୍ଦଙ୍କ ଝିଅର ବାହାଘର । ଭୋଜି ହେଉଛି । ମୁଁ ଭୋଜି ଖାଇ ପାରିଲେ ମୋଟ ହୋଇଯିବ । ସେତେବେଳେ ମୋତେ ଖାଇଲେ ତୁମ ପେଟ ପୂରିବ । ଆଜି ରାତିକ ଅପେକ୍ଷା କର । କାଲି ସକାଳୁ ଆସି ମୋତେ ଖାଇବ ।"

ହେଣ୍ଟାବାଘ ଭାବିଲା, "କୁକ୍କୁର ଯାହା କହିଲା ସତ । ସେ ଭୋକ ଖାଇସାରିଲେ ମୋଟା ହୋଇଯିବ । ସକାଳେ ତାକୁ ଖାଇଲେ ଭଲ ହେବ ।" ଏହା ଭାବି ସେ ଚାଲିଗଲା ।

କୁକ୍କୁର ହେଣ୍ଟାବାଘ ମୁହଁରୁ ବର୍ତ୍ତିଯାଇ ଚୁପ୍‌କରି ଘରଚାଳ ଉପରେ ଶୋଇଲା । ସକାଳୁ ହେଣ୍ଟାବାଘ ଆସି ଦେଖିଲା, କୁକ୍କୁର ଛାତ ଉପରେ ଶୋଇଛି । ସେ ଡାକିଲା, "ଆରେ, ତଳକୁ ଓହ୍ଲାଇ ଆ । ଏଥିମଧ୍ୟରେ ତୁ ଭୋଜ ଖାଇ ମୋଟା ହୋଇ ଯାଇଥିବୁ । ମୋତେ ଭୋକ ହେଲାଣି । ଶୀଘ୍ର ତଳକୁ ଆସିଲେ ମୁଁ ତୋତେ ଖାଇବି ।"

କୁକ୍କୁର ଛାତ ଉପରେ ଥାଇ କହିଲା, "ନା, ମୁଁ ତଳକୁ ଯାଇପାରିବ ନାହିଁ । ତୋତେ ଗୋଟିଏ କଥା କହିଦେଉଛି । ଏଣିକି ଯେତେବେଳେ ମୋତେ ପଦାରେ ଶୋଇଥିବାର ଦେଖିବୁ ସେତେବେଳେ ସଙ୍ଗେ ସଙ୍ଗେ ଖାଇଦେବୁ; ମୋର ଭୋଜ ଖାଇ ମୋଟା ହେବାଯାଏ ଅପେକ୍ଷା କରିବୁ ନାହିଁ ।"

ହେଣ୍ଟାବାଘ ଦେଖିଲା, କୁକ୍କୁରକୁ ଧରି ହେବ ନାହିଁ । ସେ ମନେ ମନେ ଭାବିଲା, "ପ୍ରକୃତରେ ମୁଁ ଭୁଲ କରିଛି । ସେତେବେଳେ କୁକ୍କୁରକୁ ନ ଖାଇ ଛାଡ଼ିଦେବା ଠିକ୍ ହୋଇନାହିଁ । ଏଣିକି ଏପରି ଭୁଲ କେବେ କରିବି ନାହିଁ ।"

ଯେ ଭ୍ରମ ହୁଏ ବାଟରେ ଦୁଃଖ
ଜୀବନେ ନ ପାଇ ତା ପାଖ ।

---

# ବାଟୋଇ ଓ କୁର୍‌ହାଡ଼

ଥରେ ଦୁଇଜଣ ଲୋକ ସଙ୍ଗ ହୋଇ ଯାଉଥିଲେ । ଯାଉ ଯାଉ ସେମାନେ ରାସ୍ତା ଉପରେ ଗୋଟିଏ କୁର୍‌ହାଡ଼ ପଡ଼ିଥିବାର ଦେଖିଲେ । ଦୁହିଁଙ୍କ ଭିତରୁ ଜଣେ ଦଉଡ଼ିଯାଇ ସେଇଟିକୁ ଧରି କହିଲା, "ଦେଖ, ଆଜି ମୋର ଭାଗ୍ୟ କେଡ଼େ ତେଜ ? ଏଇ କୁର୍‌ହାଡ଼ଟି ମୋତେ ଭାଗ୍ୟ ଆଣି ଦେଇଛି । ମୋ କୁର୍‌ହାଡ଼କୁ ଦେଖିଲ, କେଡ଼େ ସୁନ୍ଦର !"

ଅନ୍ୟ ବାଟୋଇ କହିଲା, "ତୁମର କୁର୍‌ହାଡ଼ ବୋଲି କହୁଛ କାହିଁକି ? ଆମର ବୋଲି କହ । ଦୁହେଁଯାକ ତ ଏହାକୁ ଦେଖିଥିଲେଁ ।"

ପ୍ରଥମ ବାଟୋଇ କହିଲା, "ବାଃ, ଆମର କାହିଁକି ହେବ ? ଏଟା ମୋର । ମୁଁ ପାଇଛି । ତୁମର ସେଥିରେ ଭାଗ ନାହିଁ ।"

ଦ୍ୱିତୀୟ ବାଟୋଇ କହିଲା, "ପ୍ରକୃତରେ ସେଇଟି ତୁମର ନୁହେ; କି ମୋର ନୁହେ । ମୋତେ ଭାଗ ନ ଦେବ ତ ନାହିଁ । ତୁମ ଇଚ୍ଛା ।"

ଦୁହେଁଯାକ କିଛି ଦୂର ଯିବାପରେ ଜଣେ ଲୋକ ପଛରୁ ଦୌଡ଼ି ଦୌଡ଼ି ଆସି ସେମାନଙ୍କୁ ଅଟକାଇ କହିଲା, "ମୁଁ କୁର୍‌ହାଡ଼ଟା ରାସ୍ତାରେ ରଖିଦେଇ ପ୍ରସ୍ରାବ କରିବାକୁ ଯାଇଥିଲି । ମୁଁ ଆସୁ ଆସୁ ତୁମେ ଦୁହେଁ ତାକୁ ନେଇ ପଳାଇ ଯାଉଛ । ଚାଲ, ତୁମକୁ ଧରି ଥାନାକୁ ନେବି ।"

ପ୍ରଥମ ବାଟୋଇ କହିଲା, "ଆମ ଭାଗ୍ୟ ଖରାପ । ଥାନାକୁ ଗଲେ ଆମ କଥା ସରିଯିବ ।"

ଦ୍ୱିତୀୟ ବାଟୋଇ କହିଲା, " 'ଆମ ଭାଗ୍ୟ' ନ କହି 'ମୋ ଭାଗ୍ୟ' ବୋଲି କୁହ । ତୁମେ ବର୍ତ୍ତମାନ କହୁଥିଲ ଯେ କୁର୍‌ହାଡ଼ଟି 'ତୁମେ' ପାଇଛ, ତେଣୁ ସେଇଟି 'ତୁମର' । ଏବେ ବିପତ୍ତି ପଡ଼ିଲା ବେଳକୁ ମୋତେ ଭାଗୀ କରୁଛ କାହିଁକି ? ତୁମେ ଥାନାକୁ ଯିବ; କୁର୍‌ହାଡ଼ ନେବାର ଫଳ ଭୋଗିବ ।"

ପ୍ରଥମ ବାଟୋଇର କିଛି କହିବାକୁ ବାଟ ନଥିଲା । ସେ କାନ୍ଦି କାନ୍ଦି କହିଲା, "ଭାଇ, ମୋତେ କ୍ଷମା କର । ତୁମେ ସାକ୍ଷ୍ୟ ଦେଲେ ମୁଁ ଜେଲ୍ ଯିବି ।" ଅନ୍ୟ ବାଟୋଇର ଦୟା ଆସିଲା । ସେ କୁର୍‌ହାଡ଼ର ମାଲିକକୁ କହିଲା, "ତାକୁ ଥାନାକୁ ନେବାକୁ ବସିଛ କାହିଁକି ? ସେ ତ ଚୋରି କରିନାହିଁ । ରାସ୍ତାରେ ପଡ଼ିଥିବାରୁ ନେଇ ଯାଇଥିଲା । ଥାନାକୁ ଗଲେ ସେ ହଇରାଣ, ତୁମେ ବି ହଇରାଣ । ତୁମ କୁର୍‌ହାଡ଼ ନେଇ ଚାଲିଯାଅ ।" କୁର୍‌ହାଡ଼ଟି ନେଇ ମାଲିକ ଚାଲିଗଲା । ତାପରେ ଦ୍ୱିତୀୟ ବାଟୋଇ ତାର ସାଥିକୁ କହିଲା, "ମିତ୍ର ସଙ୍ଗରେ କପଟ ଆଚରଣ କଲେ ଫଳ କଅଣ ହୁଏ ଦେଖିଲ । ସମ୍ପଦରେ ହେଉ ବା ବିପଦରେ ହେଉ, ସବୁଥିରେ ମିତ୍ରକୁ ଭାଗୀ କରିବା ଉଚିତ ।"

ସୁଖରେ ଭାଗୀ ନୁହେ ଯେହୁ
ଦୁଃଖେ କି ଭାଗୀ ହେବ ସେହୁ ?

---

# ଘୋଡ଼ା ଓ ବାର୍‌ହା

ବଣ ଭିତରେ ଗୋଟିଏ ଘୋଡ଼ା ଓ ଗୋଟିଏ ବାର୍‌ହା ପଡ଼ୋଶୀ ହୋଇ ରହୁଥିଲେ । ସେମାନଙ୍କୁ ଏକା ପଡ଼ିଆରେ ଚରିବାକୁ ହେଉଥିଲା ଓ ଏକା ପୋଖରୀରୁ ପାଣି ପିଇବାକୁ ହେଉଥିଲା । ବାର୍‌ହା ତାର ନାକ ଓ ଦାନ୍ତରେ ମାଟି ଖୋଳି ଘାସ ନଷ୍ଟ କରି ଦେଉଥିଲା, ପୋଖରୀ ପଙ୍କରେ ଲୋଟି ସେ ପାଣିକୁ ମଇଳା କରି ଦେଉଥିଲା । ତାର ଏହି ମଇଳା ପ୍ରକୃତି ହେତୁ ଘୋଡ଼ା ଅସୁବିଧାରେ ପଡ଼ୁଥିଲା ଓ ତାକୁ ଘୃଣା କରୁଥିଲା । ଏହା ଫଳରେ ପାଖାପାଖି ହୋଇ ରହୁଥିଲେ ସୁଦ୍ଧା ଦୁହିଁଙ୍କ ଭିତରେ କଥାବାର୍ତ୍ତା ସୁଦ୍ଧା ନଥିଲା । ଘୋଡ଼ା ଭାବିଲା, "କୌଣସିମତେ ଏ ବାର୍‌ହା ଏଠାରୁ ନ ଗଲେ ମୁଁ ଶାନ୍ତିରେ ରହିପାରିବି ନାହିଁ ।"

ଥରେ ଜଣେ ଶିକାରୀ ବଣକୁ ଆସିଥିଲା । ଘୋଡ଼ା ତା ପାଖକୁ ଯାଇ କହିଲା, "ତୁମେ ବଣଯାକ ବୁଲି ଜୀବ ମାରୁଛ । ଗୋଟିଏ ବାର୍‌ହା ମୋ ସାଥିରେ ଶତ୍ରୁପଣ କରୁଛି । ତାକୁ ମାରି-ଦେଲେ ମୋର ବଡ଼ ଉପକାର ହେବ ।" ଶିକାରୀ କହିଲା— "ନିଶ୍ଚୟ ମୁଁ ତାକୁ ମାରିଦେବି । କିନ୍ତୁ ସେଥିରେ ତୁମର ସାହାଯ୍ୟ ଦରକାର ।"

ଘୋଡ଼ା କହିଲା, "ତୁମେ ଯେଉଁପ୍ରକାର ସାହାଯ୍ୟ ଚାହିଁବ, ମୁଁ ତାହା ଦେବାକୁ ପ୍ରସ୍ତୁତ ଅଛି ।"

ଶିକାରୀ ଲଗାମ ଓ ଜିନ ଆଣି ଘୋଡ଼ାକୁ କହିଲା, "ମୁଁ ତୁମ ଉପରେ ବସିଲେ ବାର୍‌ହାକୁ ମାରିବା ସହଜ ହେବ । ତୁମ

ଦେହରେ ଏ ଲଗାମ ଓ ଜିନ୍‌କୁ ଲଗାଇ ମୁଁ ବସିବି ଓ ଶର ମାରି ବାରହାକୁ ଶେଷ କରିଦେବି ।”

ବାରହା ଉପରେ ଶତ୍ରୁତା ସାଧିବାକୁ ଘୋଡ଼ା ଏତେ ଆଗ୍ରହୀ ଥିଲା ଯେ ସେ ଶିକାରୀର ପ୍ରସ୍ତାବରେ ରାଜି ହୋଇଗଲା । ଶିକାରୀ ଘୋଡ଼ା ମୁହଁରେ ଲଗାମ ଦେଇ ଓ ପିଠିରେ ଜିନ୍ ପକାଇ ନିଶ୍ଚିନ୍ତ ହୋଇ ବସିଲା । ତାହାପରେ ଧନୁଶର ସାହାଯ୍ୟରେ ବାରହାକୁ ମାରିଲା । ଘୋଡ଼ା ଖୁବ୍ ଆନନ୍ଦିତ ହେଲା ।

ଶିକାରୀ ଦେଖିଲା ଯେ ଏବେ ଘୋଡ଼ା ତା ଆୟତ୍ତରେ । ସେ ଓହ୍ଲାଇ ନଯାଇ ଲଗାମ ଧରି ଘୋଡ଼ାକୁ ନିଜ ଘରକୁ ନେଲା ଓ ଖୁଣ୍ଟରେ ବାନ୍ଧି ପକାଇଲା । ସେହିଦିନଠାରୁ ଶିକାରୀ ହେଲା ଘୋଡ଼ାର ପ୍ରଭୁ । ତାର ହୁକୁମ ମାନି, ତାକୁ ପିଠିରେ ବସାଇ ତାର ଇଚ୍ଛା ଅନୁସାରେ ତାକୁ ବୋହିବା ହେଲା ଘୋଡ଼ାର କାମ ।

ଘୋଡ଼ା ମନେ ମନେ ଭାବିଲା, “ହାୟ ! ମୁଁ କ'ଣ କଲି ? ବାରହା ପାଖରେ ରହି ସ୍ୱାଧୀନ ଭାବରେ ଚଳିବା ବରଂ ଭଲ ଥିଲା । ତାକୁ ମାରିବାକୁ ଯାଇ ମୁଁ କାଳକାଳକୁ ଦାସ ହୋଇ ରହିଲି ।”

ଶତ୍ରୁର ପ୍ରତିଶୋଧ ପାଇଁ
ପରର ଆଶ୍ରା ନିଅ ନାହିଁ ।

---

# ସୁବିଧାବାଦୀର ଅସୁବିଧା

ଥରେ ବଣର ପଶୁ ଓ ପକ୍ଷୀମାନଙ୍କ ମଧ୍ୟରେ ଏକ ଭୟଙ୍କର ଯୁଦ୍ଧ ହେଲା । ପଶୁମାନେ କହିଲେ, "ଆମେ ବଣର ଅଧିକାରୀ ।" ପକ୍ଷୀମାନେ କହିଲେ, "ନା, ବଣ ଆମର ।" ପଶୁମାନଙ୍କ ପକ୍ଷରୁ ବାଘ, ସିଂହ, ଭାଲୁ , ଚିତାବାଘ, ବିଲୁଆ, ହାତୀ ପ୍ରଭୃତି ଓ ପକ୍ଷୀମାନଙ୍କ ପକ୍ଷରୁ ଶାଗୁଣା, ଚିଲ, ବାଜ, କୁଆ ପ୍ରଭୃତି ଲଢ଼େଇ କଲେ । ଅନେକ ଦିନ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା; କିନ୍ତୁ କୌଣସି ପକ୍ଷ ଅପର ପକ୍ଷକୁ ପରାସ୍ତ କରିପାରିଲେ ନାହିଁ । କେତେବେଳେ ପଶୁମାନେ ଜିଣିଲେ କେତେବେଳେ ପକ୍ଷୀମାନେ ଜିଣନ୍ତି ।

ବାଦୁଡ଼ି ପଶୁ ନୁହେ କି ପକ୍ଷୀ ନୁହେ । ପଶୁମାନେ ଜିଣିବା-ବେଳେ ସେ ସେମାନଙ୍କ ପକ୍ଷରେ ରହି କହୁଥିଲା, "ମୁଁ ପଶୁ । ଦେଖ, ମୋ ଦେହରେ ଲୋମ ଅଛି । ମୁଁ ପଶୁମାନଙ୍କ ପରି ଛୁଆ ଜନ୍ମ କରେ, ଡିମ୍ବ ଦିଏ ନାହିଁ ।" ସେହିପରି ପକ୍ଷୀମାନେ ଜିଣିଲା-ବେଳେ ସେ ପକ୍ଷୀମାନଙ୍କୁ କହୁଥିଲା, "ମୁଁ ପକ୍ଷୀଟିଏ । ଦେଖ, ମୁଁ ତୁମରି ପରି ଉଡ଼ୁଛି । ପଶୁ ଆକାଶରେ ଉଡ଼ିବାର କେହି ଦେଖିଛି ?"

ଅନେକ ଦିନ ଯୁଦ୍ଧରେ ବହୁତ ପଶୁ ଓ ପକ୍ଷୀ ମଲେ । ଶେଷରେ ଉଭୟ ପକ୍ଷର ସନ୍ଧି ହେଲା । କଥା ହେଲା ଯେ ଏଣିକି କେହି କାହାର କ୍ଷତି କରିବେ ନାହିଁ, ପଶୁପକ୍ଷୀ ମିଳିମିଶି ଚଳିବେ । ଏହି ସନ୍ଧି ଉପଲକ୍ଷରେ ଏକ ପ୍ରକାଣ୍ଡ ଭୋଜି ହେଲା । ଗୋଟିଏ ପାଖରେ ପଶୁମାନେ ବସିଲେ; ଅନ୍ୟ ପାଖରେ ପକ୍ଷୀମାନେ । ବାଦୁଡ଼ି ପଶୁମାନଙ୍କ ପାଖକୁ ଯିବାରୁ ସେମାନେ କହିଲେ, "ତୁମେ

ପଶୁ ନୁହ । ତୁମର ବଡ଼ ବଡ଼ ଡେଣା ଅଛି; ଆକାଶରେ ଉଡ଼ୁଛ । ତୁମେ ଆମ ପାଖରୁ ଚାଲିଯାଅ ।”

ବାଦୁଡ଼ି ପକ୍ଷୀମାନଙ୍କ ପାଖକୁ ଯିବାରୁ ସେମାନେ କହିଲେ, “ତୁମେ ଆମ ପାଖରୁ ଚାଲିଯାଅ । ତୁମେ ପକ୍ଷୀ ନୁହ । ପକ୍ଷୀ ହୋଇଥିଲେ ତୁମର ଥଣ୍ଟ ଥାଆନ୍ତା, ପର ଥାଆନ୍ତା । କେଉଁ ପକ୍ଷୀର ମୂଷାଭଳି କାନ ଥାଏ ? ତୁମେ ଡିମ୍ବ ଦିଅ ? ତୁମର ଲାଞ୍ଜ କାହିଁ ? କେଉଁ ସାହସରେ ତୁମେ ନିଜକୁ ପକ୍ଷୀ ବୋଲି କହୁଛ ? ଆମେ ଏଡ଼େ ବୋକା ନୋହୁ ଯେ ତୁମକୁ ଆମ ସାଥିରେ ବସାଇବୁ ?”

ଏହିପରି ଦୁଇ ପକ୍ଷରୁ ତଡ଼ାଖାଇ ବାଦୁଡ଼ି ବଡ଼ବଡ଼ ହେଇଗଲା । ସେ ପଶୁଙ୍କୁ ମୁହଁ ଦେଖାଇ ପାରିଲା ନାହିଁ କି ପକ୍ଷୀଙ୍କୁ ମୁହଁ ଦେଖାଇ ପାରିଲା ନାହିଁ । ପାହାଡ଼ର ଗୋଟାଏ ଗୁହାରେ ଲୁଚି ରହିଲା ।

ସେହିଦିନଠାରୁ ବାଦୁଡ଼ି ଆଉ ଦିନବେଳା ବାହାରେ ନାହିଁ । ଅନ୍ଧାର ରାତିରେ ଲୁଚି ଲୁଚି ଆସି ଆହାର ଖୋଜି ବୁଲେ । ଦିନ-ବେଳା ଅନ୍ଧାରୁଆ ଜାଗା ଦେଖି ଲୁଚି ରହେ ।

ଯାହାର ମତ ନୋହେ ସ୍ଥିର
ତାହାକୁ ବିଶ୍ୱାସ ନକର ।

---

## ପରଦ୍ରବ୍ୟରେ ଲୋଭ

ଗୋଟିଏ କୁକ୍କୁର ଭୋକିଲା ହୋଇ ଆହାର ଖୋଜୁଥିଲା । ସେ ଦେଖିଲା, ଜଣକର ରୋଷାଘର କବାଟ ଖୋଲା ଅଛି । ପାଖରେ କେହି ନାହାନ୍ତି । ସେ ହଠାତ୍ ଘର ଭିତରେ ପଶିଗଲା । ପୃଷ୍ଠାଶ

ଖାଇବାପାଇଁ ଖଣ୍ଡିଏ ମାଂସ ରଖିଥିଲା । କୁକ୍କୁର ସେ ଖଣ୍ଡିକ କାମୁଡ଼ି ଧରି ପଳାଇ ଆସିଲା । କାଳେ ଘରର ଲୋକେ ତାକୁ ଦେଖିବେ, ଏହି ଭୟରେ ସେ ଦୂରକୁ ଯାଇ ମାଂସ ଖଣ୍ଡିକ ଖାଇବ ବୋଲି ସ୍ଥିର କଲା ।

ଯାଉଯାଉ ସେ ଗୋଟିଏ ନଈକୂଳରେ ପହଞ୍ଚିଲା । ନଈ ଆରପାରିରେ ଗୋଟିଏ ଶ୍ରେଷ୍ଠ ବୁଦା । ସେ ଭାବିଲା, ଏହି ବୁଦା ଭିତରେ ବସି ମାଂସ ଖଣ୍ଡିକ ଖାଇବ ।

ନଈରେ ଅଳ୍ପ ପାଣି ଥିଲା । ସେ ନଈ ପାରି ହେବାକୁ ବସିଲା । କିଛିଦୂର ଯିବାପରେ ସେ ପାଣି ଭିତରେ ନିଜର ଛାଇକୁ ଦେଖି ଭାବିଲା, "ପାଣି ଭିତରେ ଆଉ ଗୋଟାଏ କୁକ୍କୁର ଖଣ୍ଡେ ମାଂସ ଧରି ଯାଉଛି । ତାହାଠାରୁ ସେ ଖଣ୍ଡକ ନେଇ ଆସିଲେ ମୁଁ ଦୁଇ ଖଣ୍ଡଯାକ ଖାଇବ ।"

ମନ ଭିତରେ ଏହିପରି ବିଚାରି ସେ ଅନ୍ୟ କୁକ୍କୁରକୁ ଆକ୍ରମଣ କରିବାପାଇଁ ଭେଉ ଭେଉ ରାବ ପାଣିରେ ମୁହଁ ବୁଡ଼ାଇ ଦେଲା । ଭୁକିଲାବେଳେ ତା ପାଟିରୁ ମାଂସ ଖଣ୍ଡିକ ପାଣିରେ ପଡ଼ି ଭାସିଗଲା । ଆଉ ଖଣ୍ଡିଏ ମାଂସ ତ ପାଇବା ଦୂରର କଥା; ନିଜ ମୁହଁରେ ଯେଉଁ ଖଣ୍ଡିକ ଥିଲା, ସେ ମଧ୍ୟ ଗଲା । ସେ କାନ୍ଦି କାନ୍ଦି କହିଲା, "ହାୟ ! ମୁଁ କେଡ଼େ ମୂର୍ଖ ! ପରର ଜିନିଷକୁ ଲୋଭ କରି ଆପଣାର ଜିନିଷକୁ ମଧ୍ୟ ହରାଇଲି ।"

ପରଦ୍ରବ୍ୟକୁ କଲେ ଆଶ
ନିଜର ଘଟେ ସର୍ବନାଶ ।

---

# କାହାକୁ ସାନ ମଣ ନାହିଁ

ପୁଣ୍ଟ ଗୋବର ପୋକଟିଏ । ତା ଦେହରେ ବା କେତେ ବଳ ? ତାକୁ କେହି ଖାତିର କରନ୍ତି ନାହିଁ । ଗୋବର ଭିତରେ ରହିଥାଏ । କିନ୍ତୁ ସେ ପକ୍ଷୀମାନଙ୍କ ପରି ଉଡ଼ିପାରେ; ଗୋବର ବା ଅନ୍ୟ ମଇଳାକୁ ପିଣ୍ଡୁଳା କରି ବହୁତ ଦୂରକୁ ଗଡ଼ାଇ ନେଇ-ପାରେ ।

ଦିନେ ସେ ଗୋବର ଗଦାରେ ବସିଥିଲି । ତାହାଠାରୁ ଅଳ୍ପ ଦୂରରେ ଗୋଟିଏ ଠେକୁଆଛୁଆ ଥିଲା । ଗୋଟିଏ ଚିଲ ଠେକୁଆ ଛୁଆକୁ ଦେଖି ତାକୁ ଝାମ୍ପ ନେବାକୁ ବସିଲା । ପାଖରେ ଆଉ କେହି ନଥିଲେ । ତେଣୁ ଠେକୁଆଛୁଆ ଗୋବର ପୋକକୁ କହିଲା, "ଦେଖ, ଚିଲ ମୋତେ ଖାଇବାକୁ ଆସୁଛି । ମୋତେ ତା ମୁହଁରୁ ରକ୍ଷା କର । ମୁଁ ତୁମର ଶରଣ ପଶୁଛି ।" ଗୋବରପୋକ ତାକୁ ଆଶ୍ୱାସନା ଦେଇ ଚିଲକୁ କହିଲା, "ଏ ଠେକୁଆଛୁଆ ମୋର ଶରଣ ପଶିଛି । ତୁମେ ତାକୁ ଛାଡ଼ି ଚାଲିଯାଅ ।" ଚିଲ ହସି ହସି କହିଲା, "ମୁଁ କିଏ ଜାଣୁ ନା ? ତୋଭଳି ଟପୋକ ମୋତେ କଥା କହିବାକୁ ସାହସ କରୁଛି, ଏହା ହିଁ ଆଶ୍ଚର୍ଯ୍ୟର କଥା । ଦେଖ୍, ମୁଁ କଅଣ କରୁଛି !" ଏହା କହି ଚିଲ ଠେକୁଆଛୁଆକୁ ଧରିଲା ଓ ସେହି ଗୋବରପୋକ ଆଗରେ ତାକୁ ମାରି ଚିକି ଚିକି କରି ଖାଇଲା ।

ଏଥିରେ ଗୋବରପୋକର ମନରେ ଭାରି ଦୁଃଖ ହେଲା । ଏତେ ଅପମାନ ସହି ସେ କିପରି ରହିବ ? ଚିଲ ଉପରେ ରାଗ ଶୁଝିବାକୁ ସେ ମନେ ମନେ ପ୍ରତିଜ୍ଞା କଲା ।

ସେ ଚଲ ବସା ଠିକଣା କଲା ଓ ସେଠାକୁ ଉଡ଼ିଯାଇ ତାର ଡିମ୍ବଗୁଡ଼ିକୁ ତଳକୁ ଗଡ଼ାଇ ଦେଇ ଚାଲି ଆସିଲା । ଚଲ ଆଉ ଗୋଟିଏ ଡାଳରେ ବସା କରି ଡିମ୍ବ ଦେଲା । କିନ୍ତୁ ଗୋବରପୋକ ସେଠାକୁ ମଧ୍ୟ ଯାଇ ଡିମ୍ବଗୁଡ଼ିକୁ ଗଡ଼ାଇ ନଷ୍ଟ କରିଦେଲା । ଏହିପରି ଚଲ ଯେତେଥର ଡିମ୍ବ ଦେଲା, ଗୋବରପୋକ ସେତେ-ଥର ସେଗୁଡ଼ିକୁ ତଳକୁ ଫିଙ୍ଗିଦେଲା ।

ଶେଷରେ ଚଲ ବ୍ରହ୍ମାଙ୍କର ଶରଣ ପଶି କହିଲା, "ଆପଣ ଦୟାକରି ମୋତେ ଗୋଟିଏ ନିରାପଦ ସ୍ଥାନ ଦିଅନ୍ତୁ ଯେ ମୁଁ ସେଠାରେ ଡିମ୍ବ ଦେବି ।" ବ୍ରହ୍ମା ଚଲର କାକୁତିରେ ସନ୍ତୁଷ୍ଟ ହୋଇ କହିଲେ, "ଆଚ୍ଛା, ତୁ ମୋ କୋଳରେ ଡିମ୍ବ ଦେ । ଏଠାକୁ କେହି ଆସିବେ ନାହିଁ ।" ଚଲ ବ୍ରହ୍ମାଙ୍କ କୋଳରେ ଡିମ୍ବ ଦେଲା । ଗୋବରପୋକ ତାହା ଦେଖି ଗୋଟିଏ ଉପାୟ କଲା । ସେ ବିଷ୍ଠାର ଗୋଟିଏ ପିଣ୍ଡୁଳା ଆଣି ଉପରେ ଉଡ଼ି ଉଡ଼ି ବ୍ରହ୍ମାଙ୍କ କୋଳରେ ପକାଇ ଦେଲା । ବ୍ରହ୍ମା ହଠାତ୍ ଉଠି ପଡ଼ିଲେ । ଡିମ୍ବ ଗୁଡ଼ିକ ତଳେ ପଡ଼ି ନଷ୍ଟ ହୋଇଗଲା ।

କାହାକୁ ନ ମଣିବ ସାନ,
ଗରବେ ନିଜ ନାଶ ଜାଣ ।

---

## ଗଧିଆ ଓ ମେଣ୍ଢାଛୁଆ

ପାହାଡ଼ ତଳେ ଗୋଟିଏ ଝରଣା ବହି ଯାଉଥାଏ । ଏହାର ଜଳ ପରିଷ୍କାର ଓ ମଧୁର । ଗୋଟିଏ ମେଣ୍ଢାଛୁଆକୁ ଶୋଷ ହେବାରୁ

ସେ ଏହି ଝରଣା କୂଳରେ ଛିଡ଼ା ହୋଇ ପାଣି ପିଇବାକୁ ଆରମ୍ଭ କଲା । ଏହି ସମୟରେ ଗୋଟିଏ ଗଧିଆ ତାହାକୁ ଦେଖି ଖାଇବାକୁ ମନ କଲା ।

ସେ ରାଗିଯାଇ ମେଣ୍ଢାଛୁଆକୁ କହିଲା, "କରେ, ତୋର ସାହସ ତ କମ୍ ନୁହେଁ । ମୁଁ ଯେଉଁ ପାଣି ପିଉଛି, ତୁ ତାକୁ ଗୋଳିଆ କରୁଛୁ କାହିଁକି ?"

ମେଣ୍ଢାଛୁଆ କହିଲା, "ଆପଣ ଅଛନ୍ତି ଉପରେ, ମୁଁ ଅଛି ତଳେ । ପାଣି ଆପଣଙ୍କ ଆଡ଼ୁ ମୋ ଆଡ଼କୁ ବୋହି ଆସୁଛି । ମୁଁ ଆପଣଙ୍କ ପିଇବା ପାଣିକୁ ଗୋଳିଆ କରୁଛି କିପରି ?"

ଗଧିଆ କହିଲା, "ପାଣି କୁଆଡ଼ୁ କୁଆଡ଼କୁ ବୋହୁଛି ସେଥିରେ କଅଣ ଅଛି ? ତୁ ବଡ଼ ଦୁଷ୍ଟ । ଗଲବର୍ଷ ତୁ ମୋତେ ଗାଳି ଦେଇଥିଲୁ ।"

ମେଣ୍ଢାଛୁଆ ଡରି ଡରି କହିଲା, "ଅସମ୍ଭବ କଥା ! ମୁଁ ଗଲବର୍ଷ ଗାଳି ଦେଲି କିପରି ? ମୋତେ ଛଅମାସ ହେଲା ମୁଁ ଜନ୍ମ ହୋଇଛି ।"

ଗଧିଆ ଗର୍ଜନ କରି କହିଲା, "ବର୍ଷକ ଆଗେ ତୁ ଜନ୍ମ ହୋଇ ନଥିଲେ ତୋ ମାଆ ମୋତେ ଗାଳି ଦେଇଥିବ । ତୁ ଗାଳି ଦେଇଥିଲେ ଯାହା, ତୋ ମାଆ ଗାଳି ଦେଇଥିଲେ, ସେଇଆ । ମୁଁ ତୋତେ ଖାଇବି ।" ଏହା କହି ଦୁଷ୍ଟ ଗଧିଆ ମେଣ୍ଢାଛୁଆକୁ ମାରି ଖାଇଲା ।

ଦୁର୍ଜନ ଆଗେ ନ୍ୟାୟ କଥା
କହିଲେ ହୁଏ ତାହା ବୃଥା ।

# ସଙ୍ଗଦୋଷ

ଜଣେ କୃଷୀ ଗୋଟିଏ ପରିବା ବଗିଚା କରିଥିଲା । ମୂଳା, କୋବି, ଗାଜର, ଶାଲଗମ ପ୍ରଭୃତି ଗଛ ଲଗାଯାଇଥିଲା । ବଣହଂସ-ମାନେ ଏହି ଗଛମାନଙ୍କର ପତ୍ର ଖାଇବାକୁ ଲାଗିଲେ । ତେଣୁ ଗଛ-ଗୁଡ଼ିକ ବଢ଼ିପାରିଲା ନାହିଁ । କୃଷୀ ଦେଖିଲା ଯେ ଏପରି ହେଲେ ତାର ମୂଳ ବୁଡ଼ିଯିବ । ସବୁ ପରିଶ୍ରମ ବୃଥା ହେବ ।

ସେ ଏମାନଙ୍କୁ ଭୟ ଦେଖାଇବା ପାଇଁ କିଆରୀରେ ଗୋଟାଏ ହୁରୁଡ଼ା ବସାଇଲା । ଦିନେ ଦୁଇଦିନ ପର୍ଯ୍ୟନ୍ତ ହୁରୁଡ଼ାକୁ ଜଣେ ମଣିଷ ମନେ କରି ହଂସମାନେ ବଗିଚାକୁ ଆସିଲେ ନାହିଁ । କିନ୍ତୁ ଯେତେବେଳେ ସେମାନେ ଜାଣିଲେ ଯେ ହୁରୁଡ଼ା ଏକା ଜାଗାରେ ରହୁଛି ଓ ସେମାନଙ୍କର କିଛି କ୍ଷତି କରୁନାହିଁ, ସେତେବେଳେ ସେମାନେ ପୁଣି ଆସି ବଗିଚାର ଗଛମାନଙ୍କରୁ ପତ୍ର ଖାଇବାକୁ ଲାଗିଲେ ।

ବଣହଂସମାନଙ୍କ ସଙ୍ଗେ ଗୋଟିଏ ବଗ ରହୁଥିଲା । ବଗ ପତ୍ର ଖାଏନାହିଁ । ତେଣୁ ବଣହଂସମାନେ ଗଛର ପତ୍ର ଖାଉଥିବା ବେଳେ ସେ ମାଟି ଖୋଳି ପୋକ ଜିଆନାଡ଼ି ଖାଉଥାଏ ।

କୃଷୀ ବିରକ୍ତ ହୋଇ ଜଣକର ପରାମର୍ଶରେ କିଆରୀ ଉପରେ ଗୋଟାଏ ବଡ଼ ଜାଲ ବିଛାଇ ଦେଲା ଓ ନିଜେ ଲୁଚି ରହିଲା । ପକ୍ଷୀମାନେ ଜାଲ ଉପରେ ବସିବାରୁ ସେ ଜାଲକୁ ଟାଣିଲା । ସବୁ ପକ୍ଷୀ ଜାଲରେ ଛନ୍ଦି ହୋଇ ପଡ଼ିଲେ । କୃଷୀ ଆନନ୍ଦରେ ଜାଲ ସହିତ ସେମାନଙ୍କୁ ଘରକୁ ନେଲା ଓ ଗୋଟି ଗୋଟି କରି ବାହାର କରି ଛୁରୀରେ ସେମାନଙ୍କ ଗଳା କାଟି ମାରିଲା ।

ବଗ ମଧ୍ୟ ବଣହଂସମାନଙ୍କ ସାଥିରେ ଜାଲରେ ଧରା ପଡ଼ି-ଥିଲା । ଋଷୀ ତାକୁ ବାହାରି କରି ମାରିବାକୁ ଗଲାବେଳକୁ ସେ କହିଲା, "ମୋତେ ମାରନାହିଁ; ମୁଁ ତୁମ ଗଛ ନଷ୍ଟ କରୁ ନଥିଲା । ତୁମେ ଜାଣ ମୁଁ ଗଛର ପତ୍ର ଖାଏନାହିଁ । ମୋତେ ଛାଡ଼ିଦିଅ ।"

ଋଷୀ କହିଲା, "ନା, ତୋତେ ଛାଡ଼ିଦେବ ନାହିଁ । ତୁ ସେମାନଙ୍କ ସାଥିରେ ଥିଲୁ । ସେମାନେ ଯେଉଁ ଦଣ୍ଡ ପାଇଲେ ତୁ ମଧ୍ୟ ସେଇ ଦଣ୍ଡ ପାଇବୁ ।" ବଗ ଯେତେ ଅନୁରୋଧ କଲେ ସୁଦ୍ଧା ଋଷୀ ତାକୁ ଛାଡ଼ି ଦେଲାନାହିଁ । ବଣହଂସମାନଙ୍କ ସଙ୍ଗରେ ଥିବାରୁ ସେ ମଧ୍ୟ ସେମାନଙ୍କପରି ପ୍ରାଣ ହରାଇଲା ।

ଦୁର୍ଜନ ସଙ୍ଗେ କଲେ ବାସ
ନିଶ୍ଚେ ଘଟିବ ସର୍ବନାଶ ।

---

## ମଶା ଓ ସିଂହ

ଗୋଟିଏ ମଶା ସିଂହ ପାଖକୁ ଯାଇ କହିଲା, "ତୁମେ ଏତେ ବଡ଼ ଜୀବ, ପଶୁମାନଙ୍କ ଭିତରେ ତୁମେ ରାଜା ବୋଲାଉଛ । ମୁଁ ସାମାନ୍ୟ କୀଟ; କିନ୍ତୁ ମୁଁ ତୁମକୁ ହରାଇ ଦେବି । ଆସ, ଆମେ ଦୁହେଁ ବଳ ପରୀକ୍ଷା କରିବା । ମୁଁ ଯେ ତୁମକୁ ହରାଇ ଦେବି ଏଥିରେ ସନ୍ଦେହ ନାହିଁ ।"

ସିଂହ କହିଲା, "ଆରେ ମଶା, ତୁ ମିଛରେ ଗର୍ବ କରୁଛୁ କାହିଁକି ? ମୁଁ ତୋତେ ଦଳିଦେଲେ ଭୂଇଁରେ ମିଶିଯିବୁ କିମ୍ବା

ଡାଳ୍ରେ କାମୁଡ଼ ଦେଲେ ତୋ ଜୀବନ ଯିବ । ତୁ ମୋତେ ଜିଣି-ଯିବୁ ବୋଲି କହୁଛୁ କିପରି ?"

ମଶା ବେଖାତିରି ଦେଖାଇ କହିଲା, "ମୁଁ ତୁମର ଦାନ୍ତ-ଦେବାକୁ ବା କାମୁଡ଼ ଦେବାକୁ ଡରି ରହିଯିବି ନାହିଁ । ମୋତେ ହରାଇବାକୁ ହେଲେ ତୁମକୁ ଅନ୍ୟ କିଛି କରିବାକୁ ପଡ଼ିବ । ଯାହା-ହେଉ ଆସ, ଦୁହେଁଯାକ ବଳ ପରୀକ୍ଷା କରିବା; କିଏ କଅଣ କରିବ ଦେଖାଯିବ ।"

ମଶା ଗୁଣୁଗୁଣୁ ଶବ୍ଦ କରି ସିଂହର ନାକ ଉପରେ ବସିଗଲା ଓ ଶୁଣ୍ଢ ଭୁଷିଦେଲା । ସିଂହ ଗର୍ଜନ କରି ପଛ ଗୋଡ଼ରେ ଛିଡ଼ା ହୋଇ ଆଗ ଦୁଇ ଗୋଡ଼ର ପଞ୍ଝାରେ ମଶାକୁ ଧରିବାକୁ ଚେଷ୍ଟା କଲା । ମାତ୍ର ମଶା ଚୁପ୍ କରି ନାକରୁ ଉଠିଯାଇ ସିଂହର ମୁହଁପାଖେ ଗୁଣୁଗୁଣୁ ହୋଇ ଉଡ଼ିଲା । ଫଳରେ ସିଂହ ତାର ନଖ ଓ ଥାବାରେ ନିଜର ନାକକୁ ଚିରି ରକ୍ତ ବୁହାଇବା ସାର ହେଲା । ଏହାପରେ ମଶା ସିଂହର କାନ ଓ ଆଖିପତାରେ ସେହିପରି ବସି ଶୁଣ୍ଢରେ ଫୋଡ଼ିବାକୁ ଲାଗିଲା । ସିଂହ ତାକୁ ଧରିବାକୁ ଗଲାବେଳକୁ କେବଳ ନିଜର ଦେହକୁ ଖଣ୍ଡିଆ କଲା । ଶେଷରେ ସିଂହ ମଶାର କାମୁଡ଼ା ସହି ନ ପାରି କହିଲା, "ଆମର ଯୁଦ୍ଧ ଏତିକିରେ ବନ୍ଦ ହେଉ । ମୁଁ ହାରିଲି ବୋଲି ମାନୁଛି ।"

ମଶା ଆନନ୍ଦରେ କହିଲା, "ମୁଁ ଆଗରୁ ସେହି କଥା କହିଥିଲି; ତୁମେ ମୋ ସାଥିରେ ପାରିବ ନାହିଁ ।" ଏହା କହି ସେ ଉଡ଼ି ଯାଉ ଯାଉ ଗୋଟାଏ ବୁଢ଼ିଆଣୀ ଜାଲରେ ଲାଖିଗଲା । ସେଥିରୁ ଖସିଯିବା ପାଇଁ ଯେତେ ଚେଷ୍ଟା କଲେ ସୁଦ୍ଧା ସେ ବାହାରି ପାରିଲା ନାହିଁ । ବୁଢ଼ିଆଣୀ ଜଗି ବସିଥିଲା । ସେ ଆସି ମଶାକୁ ମାରି

ଖାଇଲା । ମଲାବେଳେ ମଶା କହିଲା, "ଭାଗ୍ୟ ବାମ ହେଲେ ଅସମ୍ଭବ ସମ୍ଭବ ହୁଏ । ମୁଁ ଏତେ ଥର ଯେ ପଶୁମାନଙ୍କର ରାଜାକୁ ମଧ୍ୟ ହରାଇ ଦେଇଥିଲି । କିନ୍ତୁ ସାମାନ୍ୟ ବୁଢ଼ିଆଣୀ ହାତରେ ମୋର ପ୍ରାଣଗଲା ।"

କାହାକୁ ନ ମଣିବ ସାନ
ଭାଗ୍ୟ ସବୁଠୁଁ ବଳବାନ ।

---

## ମେଣ୍ଢାଚମ ଓ ଗଧିଆ

ଥରେ ଗୋଟିଏ ଗଧିଆ ଆହାର ଖୋଜି ବୁଲୁ ବୁଲୁ ଗୋଟିଏ ମେଣ୍ଢାଚମଡ଼ା ପାଇଲା । ଏହାକୁ ଦେଖି ସେ ମନେ ମନେ ଭାବିଲା, "ଗୃହେ ଏତେ ବୁଲିବୁଲି ଆହାର ଖୋଜିବା କଠିନ କାମ । ଏ ଚମଡ଼ାଟିକୁ ଘୋଡ଼ି ହୋଇ ମେଣ୍ଢାପଲରେ ପଶିଲେ ମୋତେ ଗଧିଆ ବୋଲି କେହି ଜାଣିପାରିବେ ନାହିଁ । ତେଣିକି ମୁଁ ସହଜରେ ପଲ ଭିତରୁ ମେଣ୍ଢା ମାରି ଖାଇବି ।"

ଏହା ସ୍ଥିର କରି ସେ ନିଜ ଦେହକୁ ସେହି ମେଣ୍ଢାଚମଡ଼ାରେ ଘୋଡ଼ାଇ ମେଣ୍ଢା ପଲରେ ପଶିଗଲା । ମେଣ୍ଢା ଜଗାଳି ସେକଥା ଜାଣିପାରିଲା ନାହିଁ । ଜଗାଳି ନଥିଲା ବେଳେ ସେ ଗୋଟାଏ ଦୁଇଟି ମେଣ୍ଢା ମାରି ଖାଏ ।

ଏହିପରି କେତେଦିନ ଗଲା । ମେଣ୍ଢାମାନଙ୍କ ସଂଖ୍ୟା କ୍ରମେ ଊଣା ହେବାର ଦେଖି ଜଗାଳିର ସନ୍ଦେହ ହେଲା । ସେ ପଲ

ଭିତରେ ପଶି ମେଣ୍ଢାମାନଙ୍କୁ ଗଣିବା ବେଳକୁ ଗଧିଆକୁ ଦେଖିଲା । ସେ ତାକୁ ପିଟି ପିଟି ମାରିପକାଇଲା ଓ ତାକୁ ନେଇ ଗୋଟାଏ ଗଛରେ ଟାଙ୍ଗିଦେଲା ।

କେତେଜଣ ଲୋକ ସେବାଟେ ଯାଉ ଯାଉ ଯାଉ ଗଛରେ ଗୋଟାଏ ମଲା ମେଣ୍ଢା ଓହଳୁଥିବାର ମନେ କରି ମେଣ୍ଢା ଜଗାଳିକୁ ପଚାରିଲେ; "ଏ କଅଣ ? ଗୋଟାଏ ମଲା ମେଣ୍ଢା ଗଛରେ ଟାଙ୍ଗିଛ କାହିଁକି ?" ମେଣ୍ଢା ଜଗାଳି କହିଲା, "ତୁମେ ଭଲକରି ଦେଖି ନାହିଁ । ସେଇଟା ମେଣ୍ଢା ନୁହେଁ; ଗୋଟାଏ ଗଧିଆ । ଦେହରେ ମେଣ୍ଢା ଚମଡ଼ା ଘୋଡ଼ି ହୋଇ ମୋ ମେଣ୍ଢା ପଲରେ ଲୁଚି ରହି ପ୍ରତିଦିନ ଗୋଟାଏ ଦୁଇଟା ମେଣ୍ଢା ଖାଉଥିଲା । ସେଥିପାଇଁ ତାକୁ ମାରି ଗଛରେ ଟାଙ୍ଗି ଦେଇଛି ।"

ଲୋକମାନେ ସବୁ ଘଟଣା ଜାଣିପାରି କହିଲେ, "ଗଧିଆ ତା ଦୋଷ ପାଇଁ ଉପଯୁକ୍ତ ଦଣ୍ଡ ପାଇଛି ।"

ମିଥ୍ୟା ନ ଲୁଚେ ଚିରଦିନ
ପାପର ଦଣ୍ଡ ଅଛି ଜାଣ ।

---

## କୃପଣର ଧନ

ଗୋଟିଏ ସହରରେ ଜଣେ ଧନୀ ଲୋକ ଥିଲା । ତାର ଏତେ ଧନ ଥିଲେ ହେଁ ନିଜ ଖାଇବା ପିଇବାରେ ସୁଦ୍ଧା ସେ ବେଶି ଖରଚ କରୁ ନ ଥିଲା । ଗରିବ ଭିକାରୀଙ୍କୁ ମୁଠାଏ ଚାଉଳ ଦେବାକୁ ସେ

କୁଣ୍ଠିତ ଥିଲେ । ତେଣୁ ସେମାନେ ତା ଦ୍ୱାରକୁ ଯାଉ ନଥିଲେ । ଲୋକେ ତାର ନାଁ ଧରୁ ନଥିଲେ । ସେ ଖାଲି ଧନ ସଞ୍ଚିବାରେ ଲାଗିଥାଏ ।

ଶେଷରେ ସେ ସବୁ ଟଙ୍କା ପଇସା ବଦଳରେ ସୁନା କିଣି ଗୋଟିଏ ସୁନାର ଇଟା କଲା ଓ ଗୋଟିଏ ଘରେ ଗାତ ଖୋଳି ସେଥିରେ ତାକୁ ପୋତିଲା । ସେହିଦିନଠାରୁ ସେ ପ୍ରତିଦିନ ରାତି ଅଧରେ ଦୀପଜାଳି ସେ ଘରକୁ ଯାଏ ଓ ଗାତରୁ ସୁନାର ଇଟାଟି ବାହାରି କରି କିଛି ବେଳଯାଏ ହାତରେ ଧରି ଦେଖେ । ପୁଣି ପୋତିଦେଇ ଶୋଇବାକୁ ଯାଏ । ସୁନାର ଇଟାକୁ ହାତରେ ଧରି ଦେଖିଲାବେଳେ ଆନନ୍ଦରେ ତାର ଛାତି ଫୁଲିଯାଏ ।

ଏହି ଧନୀ ଲୋକର ଘର ପାଖରେ ଜଣେ ଗରିବ ଚାଷୀ ତାର କୁଡ଼ିଆରେ ରହୁଥିଲା । ସେ ଦେଖିଲା, ଧନୀ ଲୋକଟି ପ୍ରତିଦିନ ରାତି ଅଧରେ ଦୀପ ନେଇ ଗୋଟିଏ ଘରେ କିଛି ସମୟ ରହୁଛି ଓ ତା' ପରେ ଶୋଉଛି । ଦିନେ ସେ ଲୁଚି ରହି ଦୂରରୁ ଧନୀ ଲୋକର କାରବାର ଦେଖିଲା । ଲୋକଟି ଦୀପ ନେଇ ଶାବଳରେ ଗୋଟିଏ ସ୍ଥାନ ଖୋଳିଲା ଓ ସେଥିରୁ ଗୋଟିଏ ଇଟାପରି ପଦାର୍ଥ ବାହାର କରି କିଛି ବେଳଯାଏ ତାକୁ ଧରି ଏପାଖ ସେପାଖ କରି ଦେଖିଲା । ପୁଣି ତାହାକୁ ସେହିଠାରେ ପୋତିଦେଇ ଶୋଇବାକୁ ଗଲା ।

ଏହା ଦେଖି ଚାଷୀ ଅନୁମାନ କଲା ଯେ ଧନୀ ଲୋକଟି ଗାତରେ ନିଶ୍ଚୟ କୌଣସି ମୂଲ୍ୟବାନ୍ ଜିନିଷ ରଖିଛି । ତା ନୋହିଥିଲେ ଏତେ ରାତିରେ ତାକୁ ଖୋଳି ଦେଖୁଥାନ୍ତା କାହିଁକି ?

ଦିନେ ରାତିରେ ଧନୀ ଲୋକ ଶୋଇବାକୁ ଯିବାପରେ ଚାଷୀ କୌଣସିମତେ ସେହି ଘରେ ପଶି ଗାତକୁ ଖୋଳି ସୁନାର ଇଟାଟିକୁ

ଶ୍ଟେରଇ ନେଇ ଆସିଲା ଓ ସେଥିରେ ଗୋଟିଏ ପଥର ପୋତି- ଦେଲା ।

ପରଦିନ ସକାଳେ ଧନୀ ଲୋକ ଯାଇ ଦେଖିଲା, କେହି ସୁନାଇଟା ଶ୍ଟେରଇ ନେଇ ପଥର ଖଣ୍ଡେ ପୋତି ଦେଇ ଯାଇଛି । ସେ ଅଥୟ ହୋଇ କାନ୍ଦି ମୁଣ୍ଡ ପିଟିଦେଲା । ତାର କାନ୍ଦ ଶୁଣି ପଡ଼ଶା- ମାନେ ଏଥିର କାରଣ ପଚାରିଲେ । ସୁନାଚୋରର କଥା ଶୁଣି ସେମାନେ କହିଲେ, "ଏଥିରେ ତୁମେ ଦୁଃଖ କରୁଛ କାହିଁକି ? ତୁମେ ପ୍ରତିଦିନ ସକାଳେ ଗାତ ଖୋଳି ଥରେ ତାକୁ ଦେଖୁଥିଲ । ସେଥିରେ ତୁମର ସନ୍ତୋଷ ହେଉଥିଲା; କିନ୍ତୁ ଦୁନିଆରେ କାହାର କିଛି ଉପକାର ହେଉ ନଥିଲା । ଏଣିକି ତୁମେ ସେହିପରି ପ୍ରତିଦିନ ଗାତ ଖୋଳି ପଥର ଖଣ୍ଡିକୁ ଦେଖି ମନେ କରିବ ଯେ ସେଇଟି ତୁମର ସୁନାର ଇଟା । କାନ୍ଦୁଛ କାହିଁକି ?"

ନ କଲେ ଭୋଗ ଅବା ଦାନ
ଧନରେ କିବା ପ୍ରୟୋଜନ ?

---

## ସିଂହ ଓ ବିଲୁଆ

କୌଣସି ବଣରେ ଗୋଟିଏ ସିଂହ ଥିଲା । ସିଂହ ସବୁ ପଶୁଙ୍କର ରଜା ହୋଇଥିବାରୁ ସେମାନେ ତାକୁ ଡର କରୁଥିଲେ । ଏହି ସିଂହ ବୁଢ଼ା ହୋଇଗଲା । ତାର ଦେହର ବଳ ଛଟିଗଲା । ସେ ଆଉ ବଣ ଭିତରେ ଦୌଡ଼ାଦୌଡ଼ି କରି ପଶୁ ମାରି ପାରିଲା ନାହିଁ ।

ଖାଇବା ବିନା ସେ ଦିନକୁଦିନ ଆହୁରି ଦୁର୍ବଳ ହୋଇଗଲା । ସେ ଭାବିଲା, "ଏଭଳି ନଖାଇ ନପିଇ ଆଉ କେତେଦିନ ବଞ୍ଚିବି ? ଏବେ ଦେହରେ ବଳ ନାହିଁ ଯେ ବଣରେ ବୁଲି ଶିକାର କରିବି ? କୌଶଳ କରି ଆହାର ଯୋଗାଡ଼ ନ କଲେ ଚଳିବ ନାହିଁ ।"

ସିଂହ ଆପଣା ଗୁହା ଭିତରେ ପଡ଼ିରହି ପଶୁମାନଙ୍କୁ ଜଣାଇ ଦେଲା ଯେ ସେ ବେଗରେ ଉଠି ପାରୁନାହିଁ । ସେ ବାହାରକୁ ଯିବାଆସିବା ବନ୍ଦ କରିଦେଲା । ପଶୁରାଜ ବେମାର ପଡ଼ିଛନ୍ତି, ଆଉ ବାହାରୁ ନାହାନ୍ତି ଶୁଣି ପଶୁମାନେ ତାଙ୍କୁ ଦେଖିବାକୁ ଆସିଲେ । ସିଂହ ଜଣାଇ ଦେଲା ଯେ ସେମାନେ ଥରକେ ଜଣକରୁ ବେଶୀ ଆସିବେ ନାହିଁ । ବେଶି ଜୀବ ଅସି ଗୋଳମାଳ କଲେ ରୋଗ ବଢ଼ିଯିବ ।

ଯେଉଁଦିନ ଯେଉଁ ପଶୁଟି ସିଂହର କୁଶଳ ପଚାରିବାକୁ ଗୁମ୍ଫା ଭିତରକୁ ଯାଉଥିଲା, ସେଦିନ ସିଂହ ତାକୁ ମାରି ଖାଉଥିଲା । ଏହା ଫଳରେ ଅଳ୍ପଦିନ ଭିତରେ ସିଂହର ବଳ ଫେରି ଆସିଲା । ଆହାର ଖୋଜିବାପାଇଁ ତାକୁ କଷ୍ଟ ହେଲେ ପରିଶ୍ରମ କରିବାକୁ ପଡ଼ୁ ନାହିଁ ।

ଗୋଟିଏ ବିଲୁଆ ମନରେ ସନ୍ଦେହ ହେଲା, "ସିଂହ ଗୋଟାଏ ଚାଲାକି କରି ମିଛରେ ବେମାରରେ ପଡ଼ିଛି ବୋଲି ପ୍ରଚାର କରିଛି । ଯେଉଁମାନେ ଗୁମ୍ଫା ଭିତରକୁ ଯାଉଛନ୍ତି, ସେମାନେ ବାହାରି ଆସିବାର ଦେଖା ଯାଉନାହିଁ କାହିଁକି ?"

ଏହିଭଳି ବିଚାରି ଦିନେ ବିଲୁଆ ସିଂହର ଗୁମ୍ଫା ପାଖରେ ପହଞ୍ଚି କହିଲା, "ମହାରାଜ, ଅନେକ ଦିନ ହେଲା ଆପଣଙ୍କର ଦେଖା ମିଳୁନାହିଁ । ଆପଣଙ୍କର ଦେହ ଭଲ ଅଛି ତ ?"

ସିଂହ କୁନ୍ଥେଇ କୁନ୍ଥେଇ କହିଲା, "କିଏ ବିଲୁଆ ଭାଇ ? ମୁଁ ବେମାର ପଡ଼ିଛି ଯେ ବାହାରକୁ ଯାଇ ପାରୁନାହିଁ । ପାହା

ହେଉ, ଏତେଦିନେ ତୁମେ ମୋ ଖବର ନେବାକୁ ଆସିଛ । ବାହାରେ ଛିଡ଼ା ହୋଇ ରହିଲ କାହିଁକି ? ଭିତରକୁ ଆସ, ପାଖରେ ବସିଲେ କଥାବାର୍ତ୍ତା ହେବ । କେତେଦିନ ହେଲା ତୁମକୁ ଦେଖିନାହିଁ । ତୁମକୁ ଦେଖିଲେ ମନରେ ଆନନ୍ଦ ହେବ । ମୋର ଶେଷ ସମୟ ହେଲାଣି; ଆଜ ଦିନେ ଦୁଇଦିନ । ମଲା ଆଗରୁ ଥରେ ଦେଖିଥାଏଁ ।"

ବଲୁଆ ସିଂହର ଗୁହାଖି ବୁଦ୍ଧିପାରି କହିଲା, "ମହାରାଜ, ମୋତେ କ୍ଷମା କରନ୍ତୁ, ମୁଁ ଭିତରକୁ ଯାଇପାରିବି ନାହିଁ । ମୁଁ ଦେଖୁଛି, ଯେଉଁମାନେ ଭିତରକୁ ଯାଇଛନ୍ତି, ସେମାନଙ୍କର ଯିବାର ପାଦଚିହ୍ନ ପଡ଼ିଛି; କିନ୍ତୁ କାହାରି ଫେରି ଆସିବାର ପାଦଚିହ୍ନ ପଡ଼ିନାହିଁ । ତେଣୁ ମୁଁ ଗୁମ୍ଫା ଭିତରକୁ ଗଲେ ଆଉ ବାହାରିବାର ଆଶା ଦେଖି ପାରୁନାହିଁ । ମୁଁ ଏହିଠାରୁ ଆପଣଙ୍କୁ ପ୍ରଣାମ ଜଣାଇ ବିଦାୟ ନେଉଛି । ଈଶ୍ବରଙ୍କ କୃପାରୁ ଆପଣ ଶୀଘ୍ର ଆରୋଗ୍ୟ ଲାଭ କରନ୍ତୁ ।"

କପଟୀ କପଟ ବଚନ
ଶୁଣି ନ ଭୁଲ କଦାଚନ ।

---

## ନିର୍ଲଜ୍ଜ କୁକ୍କୁର

ରାତ୍ରରେ ଘର ଜଗିବାପାଇଁ ଲୋକେ କୁକ୍କୁର ରଖିଥାନ୍ତି । ଘରର ଲୋକେ ଶୋଇ ପଡ଼ନ୍ତି; କିନ୍ତୁ କୁକ୍କୁର ଚେଇଁ ରହିଥାଏ । କୌଣସି ଲୋକ ଘର ପାଖକୁ ଆସିଲାକ୍ଷଣି ସେ ଭୁକଉଠେ; ଘରର

ଲୋକେ ତେଣିକରି ସାବଧାନ ହୋଇଯାନ୍ତି। ଏପରିକି କେହି ଘରୁ କୌଣସି ଜିନିଷ ନେବାକୁ ବସିଲେ କୁକ୍କୁର ତାକୁ କାମୁଡ଼ି ଅଟକାଇଦିଏ।

ଜଣେ ଭଦ୍ରଲୋକ କୁକ୍କୁରଟିଏ ପାଳିଲେ; ମାତ୍ର ସେ ଅନ୍ୟ କୁକ୍କୁରମାନଙ୍କପରି ଘର ଜଗିଲା ନାହିଁ। ତାକୁ ଖୁବ୍ ଭଲ ଖାଇବାକୁ ଦିଆଯାଉଥିଲା ଓ ସେ ବେଶ୍ ମୋଟା ହୋଇଥିଲା; କିନ୍ତୁ ତାର ପ୍ରକୃତି ଥିଲା ବଡ଼ ମନ୍ଦ। କୌଣସି ଲୋକ ବାଟରେ ଯାଉଥିବାର ଦେଖିଲେ ସେ ଚୁପ୍‌କରି ତା ପଛେ ପଛେ କିଛିଦୂର ଯାଇ ହଠାତ୍ ତାକୁ କାମୁଡ଼ି ଦେଉଥିଲା। ଲୋକଟି ଚିତ୍କାର କରି ଛଟପଟ ହେଉଥିଲା। ଏଥିରେ କୁକ୍କୁରର ଆନନ୍ଦ।

ଏହିପରି କେତେ ଲୋକଙ୍କୁ କାମୁଡ଼ିବାରୁ ସେମାନେ ତାର ମାଲିକଙ୍କ ପାଖରେ ଆପତ୍ତି କଲେ। କେହି କେହି କହିଲେ, "ଏଭଳି କୁକ୍କୁରକୁ ବାହାର କରିଦିଅ।" କେହି ଅବା କହିଲେ, "ତାକୁ ମାରି ପକାଅ।"

କିନ୍ତୁ କୁକ୍କୁରଟି ତାଙ୍କର ଅତି ପ୍ରିୟ ଥିଲା ଓ ସେ ନିଜେ ବଡ଼ ଦୟାଳୁ ଥିଲେ। ତେଣୁ ସେ ତାକୁ ତଡ଼ିଦେଲେ ନାହିଁ କିମ୍ବା ମାରି ପକାଇଲେ ନାହିଁ। ଗୋଟିଏ ଘଣ୍ଟି ଆଣି ସେ ତା ବେକରେ ବାନ୍ଧିଦେଲେ। ଏହାଫଳରେ ସେ କୌଣସି ଲୋକ ପଛରେ ଗଲେ ଘଣ୍ଟି ବାଜୁଥିଲା ଓ ଲୋକଟି ସାବଧାନ ହୋଇ ଯାଉଥିଲା।

କୁକ୍କୁର ଗଳାଲଗ୍ନ ଘଣ୍ଟି ବାଜୁଥିବାରୁ ସେ ଏହାକୁ ଦେଖାଇ ହେବାପାଇଁ ଏଣେତେଣେ ବୁଲିଲା। ଏପରିକି କ୍ଳାନ୍ତ ହୋଇଥିଲାବେଳେ ମଧ୍ୟ ସେ ମୁଣ୍ଡ ହଲାଇ ଘଣ୍ଟିକୁ ବଜାଇଲା। ତା ମନରେ ଗର୍ବ ହେଲା ଯେ ଆଉ କୌଣସି କୁକ୍କୁରର ବେକରେ ଏପରି ଘଣ୍ଟି ନାହିଁ। ଦିନେ ତାକୁ ଗୋଟିଏ ବୁଢ଼ା କୁକ୍କୁର କହିଲା,

"ତୁ ମନେ କରୁଛୁ ଯେ ଏ ଘଣ୍ଟି ହେଉଛି ଏକ ଗର୍ବର ବିଷୟ । କିନ୍ତୁ ତୋର ଟିକିଏ ବୁଦ୍ଧି ଥିଲେ ବୁଝିପାରନ୍ତୁ ଯେ ଏହା ପ୍ରକୃତରେ ତୋ ପକ୍ଷରେ ଲଜ୍ଜାର ବିଷୟ । ତୋର ମାଲିକ ଭଲ ଗୁଣପାଇଁ ତୋତେ ଏହାକୁ ପୁରସ୍କାର ଦେଇ ନାହାନ୍ତି । ତୋର ଦୁଷ୍ଟପଣ ଜଣାଇ ଲୋକଙ୍କୁ ତୋଠାରୁ ଦୂରରେ ରହିବାପାଇଁ ସାବଧାନ ହେବାକୁ ତୋ ବେକରେ ଏହା ବନ୍ଧା ହୋଇଛି । ଏ ଘଣ୍ଟି ତୋର ନିନ୍ଦା ଓ ଅପମାନର ଚିହ୍ନ ।"

କୁକ୍କୁରଟି ଆଉ ଘଣ୍ଟି ସକାଶେ ଗର୍ବ କଲା ନାହିଁ ।
ନିର୍ବୋଧ ନ ପାରଇ ଜାଣି
କେ ଗୁଣ କେ ବା ଦୋଷ ପୁଣି ।

---

## କୃଷକ ଓ ସୁନାଡିମ୍ବ

ଜଣେ କୃଷକ ଗୋଟିଏ ହଂସୀ ପାଳିଥିଲା । ତାର ଦେହଟି ବରଫପରି ଧଳା ଓ ତୁଳାପରି କୋମଳ । କୃଷକ ତାଭଳି ସୁନ୍ଦର ହଂସୀ ଆଉ କେଉଁଠାରେ ଦେଖି ନଥିଲା । କିନ୍ତୁ ଅନେକ ଦିନ ଗଲେ ସୁଦ୍ଧା ହଂସୀ ଡିମ୍ବ ଦେଲାନାହିଁ । କୃଷକ ମନରେ ଦୁଃଖ ହେଲା । ଯେଉଁ ହଂସୀ ଡିମ୍ବ ନ ଦିଏ ତାକୁ ପାଳିବାରେ କି ଲାଭ ?

ଦୈବାତ୍ ଦିନେ ସକାଳେ କୃଷକ ତାକୁ ଚରାଇବା ପାଇଁ ବସାରୁ ବାହାର କରିବାକୁ ଗଲାବେଳକୁ ଦେଖିଲା ବସାରେ ଗୋଟିଏ ଡିମ୍ବ ରହିଛି । ତାର ମନରେ ଆନନ୍ଦ ହେଲା । ସେ ଡିମ୍ବକୁ ଧରି

ପରୀକ୍ଷା କରି ଆଶ୍ଚର୍ଯ୍ୟ ହୋଇଗଲା । ଏହାର ରଙ୍ଗ ସୁନାପରି ଓ ଏହାର ଓଜନ ଟିକେ ବେଶି । ଏ ଯେ ସୁନାର ଡିମ୍ବ, ସେଥିରେ ତାର ସନ୍ଦେହ ରହିଲା ନାହିଁ । ସେ ଡିମ୍ବଟିକୁ ନେଇ ଲୁଚାଇ ରଖିଦେଲା ।

ଏଣିକି ହଂସୀ ପ୍ରତିଦିନ ଗୋଟିଏ ଲେଖାଏଁ ସୁନାର ଡିମ୍ବ ଦେବାକୁ ଲାଗିଲା । କୃଷକ ସକାଳୁ ଉଠି ତାହାକୁ ନେଇ ସାଇତି ରଖିଦିଏ । କିଛିଦିନ ପରେ ସେ ଗୁଡ଼ିଏ ସୁନାଡିମ୍ବ ଜମାକରି ରଖିଲା ।

ଦିନେ କୃଷକ ମନରେ ଗୋଟାଏ ମନ୍ଦବୁଦ୍ଧି ପଶିଲା । ସେ ଭାବିଲା, "ପ୍ରତିଦିନ ଗୋଟିଏ ଲେଖାଏଁ ଡିମ୍ବ ନେଇ ଏତେ ହଇରାଣ ହେବି କାହିଁକି ? ଏହାର ପେଟରେ ଯେତେ ଡିମ୍ବ ଅଛି ଏକାଥରକେ ସବୁଯାକ ନେଇଗଲେ ସୁବିଧା ।"

ଏହା ଭାବି ସେ ଛୁରୀ ଆଣି ହଂସୀର ପେଟକୁ ଦୁଇଫାଳ କରି ଚିରିଦେଲା । ସଙ୍ଗେ ସଙ୍ଗେ ହଂସୀ ମରିଗଲା । କୃଷକ ତାର ପେଟରେ ହାତ ପୂରାଇ ଖୋଜିଲା । କିନ୍ତୁ ଗୋଟିଏ ହେଲେ ଡିମ୍ବ ପାଇଲା ନାହିଁ । ସେ କାନ୍ଦି କାନ୍ଦି କହିଲା, "ହାୟ ! ମୁଁ କି ଦୁର୍ବୁଦ୍ଧି କଲି ! ଏକାବେଳକେ ସବୁ ଡିମ୍ବ ପାଇବି ବୋଲି ମନ କରି ପ୍ରତିଦିନ ଯେଉଁ ଗୋଟିକ ପାଉଥିଲି, ତାକୁ ମଧ୍ୟ ହରାଇଲି ।"

ଲୋଭରୁ ପାପର ଜନମ
ପାପ ହିଁ ବିନାଶ କାରଣ ।

---

# ଅସମାନ ପ୍ରାଣୀଙ୍କ ମିତ୍ରତା

ଗୋଟିଏ ପୋଖରୀରେ ବେଙ୍ଗଟିଏ ଥିଲା, ସେହି ପୋଖରୀ କୂଳରେ ଗାଛ ଉଚରେ ମୂଷାଟିଏ ରହୁଥିଲା । ଦିନେ ସେ ଦୁହିଁଙ୍କର ଭେଟ ହେଲା । କିଛି ବେଳଯାଏ କଥାବାର୍ତ୍ତା ହେଲାପରେ ଦୁହେଁ ପରସ୍ପରର ବନ୍ଧୁ ହୋଇଗଲେ ।

ମୂଷା କହିଲା, "ତୁମେ ସବୁବେଳେ ଏକା ପୋଖରୀରେ, ନ ହେଲେ ଏହାର କୂଳରେ ରହୁଛ । ଚାଲ ବିଦେଶ ବୁଲି ଯିବା । ନାନା ସ୍ଥାନ, ନାନା ଜିନିଷ ଦେଖିବା ।"

ବେଙ୍ଗ ଏହି ପ୍ରସ୍ତାବରେ ରାଜିହୋଇ କହିଲା, "ହଁ, ଯିବା । କିନ୍ତୁ ଯିବା ଆଗରୁ ଗୋଟିଏ ଦଉଡ଼ିର ଏକ ମୁଣ୍ଡରେ ତୁମ ଅଣ୍ଟାକୁ ବାନ୍ଧିବା, ଆଉ ମୁଣ୍ଡଟି ମୋ ଅଣ୍ଟାରେ ବାନ୍ଧିଦେବା । ତାହାହେଲେ ଦୁହେଁଯାକ ସବୁବେଳେ ପାଖେ ପାଖେ ରହିଥିବା । ବିପଦ ପଡ଼ିଲେ ପରସ୍ପରକୁ ସାହାଯ୍ୟ କରିପାରିବା ।"ମୂଷା ଏଥିରେ ଆନନ୍ଦରେ ରାଜି ହେଲା । ବେଙ୍ଗ ଗୋଟିଏ ଦଉଡ଼ି ଆଣିଲା । ଏହାର ଗୋଟିଏ ଗୋଟିଏ ମୁଣ୍ଡକୁ ଦୁହେଁ ଅପଣା ଆପଣା ଅଣ୍ଟାରେ ବାନ୍ଧି ଦେଲେ ।

ବେଙ୍ଗ ଡେଇଁ ଡେଇଁ ଗଲା । ମୂଷା ତା ପଛେ ପଛେ ଦଉଡ଼ିଲା । ଏହିପରି କିଛି ଦୂର ଯିବାପରେ ଗୋଟିଏ ଗ୍ରୋତ ନଈ ପଡ଼ିଲା । ଏହାକୁ ଦେଖି ମୂଷାର ଭୟ ହେଲା । ସେ କହିଲା, "ମଇତ, ମୋତେ ଡର ମାଡ଼ୁଛି; ଏ ନଈ କିପରି ପାର ହେବା ?" ବେଙ୍ଗ କହିଲା, "ଭୟର କାରଣ ନାହିଁ । ମୁଁ ଆଗେ ଆଗେ ପହଁରି ଯିବି । ତୁମେ ମୋ ପଛେ ପଛେ ପହଁରି ଆସିବ । ତୁମେ ପହଁରି ନ ପାରିଲେ ମୋ ପିଠିରେ ବସିଯିବ । ଭୟ କାହିଁକି ?"

ବେଙ୍ଗ ପାଣିରେ ପହଁଶ ମୂଷାକୁ ଟାଣିଲା । ମୂଷା କଷ୍ଟରେ ପହଁରିଲା । ଏହି ସମୟରେ ବେଙ୍ଗ ନିଜେ ପାଣିରେ ବୁଡ଼ିବାକୁ ମନକଲା । ସେ ପାଣି ଭିତରେ ବୁଡ଼ିବାରୁ ମୂଷା ମଧ୍ୟ ବୁଡ଼ିବାକୁ ଲାଗିଲା । ମୂଷା ଡାକ ପକାଇଲା, "ମଇତ୍ର, ଦୟାକରି ତୁମେ ପାଣି ଉପରକୁ ଉଠିଆସ, ନୋହିଲେ ମୁଁ ମଲି ।"

ବେଙ୍ଗ ମଉଜରେ ପାଣି ଭିତରକୁ ଭିତରକୁ ଯାଉଥିଲା । ସେ ମୂଷାର ଡାକ ଶୁଣନ୍ତା କାହିଁକି ? ମୂଷା ଅନନ୍ୟୋପାୟ ହୋଇ ଛଟପଟ ହେଲା । ଏହି ସମୟରେ ଗୋଟିଏ ଚିଲ ଆକାଶରେ ଉଡ଼ି ମୂଷା ଛଟପଟ ହେଉଥିବାର ଦେଖୁଥିଲା । ସେ ଝାମ୍ପ ମାରି ମୂଷାକୁ ତା ନଖରେ ଧରି ଉଡ଼ିଗଲା । ବେଙ୍ଗ ତା ସହିତ ବନ୍ଧା ହୋଇଥିବାରୁ ସେ ମଧ୍ୟ ଚିଲ ହାବୁଡ଼ରେ ପଡ଼ିଲା । ଗଛ ଉପରେ ବସି ଚିଲ ମୂଷା ଓ ବେଙ୍ଗ ଦୁହିଁଙ୍କୁ ମାରି ଖାଇଲା ।

ସମାନ ଜାତି, ରୂପ, ଗୁଣ
ମଇତ୍ର ପଣର ଲକ୍ଷଣ ।
ବିଷମେ ବନ୍ଧୁ ପଣ କଲେ
ପ୍ରମାଦ ପଡ଼ିଥାଏ ହେଳେ ।

---

## ବଗଡ଼, ଶାଗୁଣା ଓ ବାର୍ହା

ବଣ ଭିତରେ ଗୋଟିଏ ଡେଙ୍ଗା ଶାଳଗଛ ଥିଲା । ଏହି ଗଛରେ ତିନୋଟି ପ୍ରାଣୀ ନିଜନିଜର କୁଟୁମ୍ବ ସହିତ ରହୁଥିଲେ । ଗଛର ଅଗରେ ଗୋଟିଏ ଶାଗୁଣା ବସା କରିଥିଲା । ଗଛ ମଝିରେ

ଗୋଟିଏ କୋରଡ଼ରେ ବଗଡ଼ଟିଏ ରହୁଥିଲି ଓ ଗଛମୂଳରେ ଗୋଟିଏ ଗାତରେ ବାର୍‌ହାଟିଏ ରହୁଥିଲି । ତିନହେଁଯାକ ନିଜନିଜର ଛୁଆମାନଙ୍କୁ ଘେନି ରହିଥାନ୍ତି ।

ଦିନେ ବଗଡ଼ ଗଛ ଅଗକୁ ଚଢ଼ି ଚଢ଼ି ଯାଇ ଶାଗୁଣାକୁ କହିଲା, "ଆମେ ଏତେଦିନଯାଏ ସୁଖରେ ଥିଲେଁ । କିନ୍ତୁ ଏ ଦୁଷ୍ଟ ବାର୍‌ହା ଗଛମୂଳକୁ ଏକବାରେ ଖୋଳି ପକାଇଲାଣି । କେତେ ଚେର ନଷ୍ଟ ହୋଇଗଲାଣି । ଦିନେ ନିଶ୍ଚୟ ଗଛଟି ଉପୁଡ଼ି ପଡ଼ିବ । ସେତେବେଳେ ଆମ ଛୁଆଗୁଡ଼ିକର ଦଶା କଅଣ ହେବ ?"

ଶାଗୁଣା କହିଲା, "ତୁମ କଥା ସତ । ଗଛ ପଡ଼ିଗଲେ ଆମର ଛୁଆଗୁଡ଼ିକ ମରିବେ । ମୁଁ କଅଣ କରିବ ? ମୋତେ ବୁଦ୍ଧି ଦିଅ ।"

ବଗଡ଼ କହିଲା, "ମୁଁ କିଛି ଭାବିପାରୁ ନାହିଁ । ମୁଁ ତୁମକୁ କି ବୁଦ୍ଧି ଦେବି ? ତେବେ ଏତିକି କରିବା—ଦିନରାତି ଆମେ ବସାରେ ଜଗି ରହିବା ବାର୍‌ହା କଅଣ କରୁଛି ଦେଖିବା ।"

ଶାଗୁଣା ଏହି ପ୍ରସ୍ତାବରେ ରାଜି ହୋଇଗଲା ।

ଏହାପରେ ବଗଡ଼ ବାର୍‌ହା ପାଖକୁ ଯାଇ କହିଲା, "ତୁମେ ବସା ଛାଡ଼ି କୁଆଡ଼େ ଯିବ ନାହିଁ । ସବୁବେଳେ ଛୁଆମାନଙ୍କୁ ଜଗି ରହିବ । ଶାଗୁଣା ତା ଛୁଆମାନଙ୍କୁ କହୁଥିଲା, ତୁମେ ବସାରୁ ବାହାରି ଗଲେ ସେ ତୁମ ଛୁଆମାନଙ୍କୁ ନେଇ ତାର ଛୁଆମାନଙ୍କୁ ଖାଇବାକୁ ଦେବ ।"

"ତୁମେ କିପରି ଏକଥା ଜାଣିଲ ?"

"କାଲି ରାତିରେ ଶାଗୁଣା ଏହା କହୁଥିବାର ମୁଁ ନିଜ କାନରେ ଶୁଣିଛି ।"

"ତେବେ ମୁଁ କଅଣ କରିବ ?"

"କାହିଁକି ? ତୁମେ ପିନା ବସା ଗୁଡ଼ ଗଲେ ଶାଗୁଣା ତୁମ ଛୁଆଙ୍କୁ ନେଇଯିବ । ତୁମେ ବାହାରକୁ ନ ଗଲେ ସେ କଅଣ କରିବ ?"

ସେଦିବସଠାରୁ ଶାଗୁଣା ଓ ବାର୍‌ହା କେତେବେଳେ ହେଲେ ଆହାର ଖୋଜିବାକୁ ବାହାରକୁ ଗଲେ ନାହିଁ । ଖାଇବା ବିନା ଦିନକୁଦିନ ସେମାନେ ଦୁର୍ବଳ ହୋଇଗଲେ । ସେ ଦୁହିଁଙ୍କ ଛୁଆମାନେ ଶୁଖିଗଲେ । ଏଣେ ବିରାଡ଼ି ଓ ତାର ଛୁଆମାନେ ଖାଇପିଇ ଖୁବ୍ ବଳୁଆ ହେଲେ । ଶେଷରେ ବିରାଡ଼ି ଓ ତାର ଛୁଆମାନେ ଯାଇ ବାର୍‌ହା ଓ ଶାଗୁଣାର ଛୁଆମାନଙ୍କୁ ମାରି ଖାଇଲେ ।

ଦୁଷ୍ଟ ପରିଣି କରି ଛଳ
ସାଧଇ ନିଜର ମଙ୍ଗଳ ।

---

## ଦୁଷ୍ଟର ଉପକାରରେ ଲାଭ

ଖୁବ୍ ଶୀତ ଦିନ । ବରଫ ପଡ଼ୁଥାଏ । ସେଇଥିରେ ଜଣେ ଚାଷୀ କାମ କରିବାକୁ ବିଲକୁ ଗଲା । ବିଲରେ ପହଞ୍ଚି ସେ ଦେଖିଲା, ବରଫ ଉପରେ ଗୋଟିଏ ସାପ ପଡ଼ିଛି । ତା ଦେହରେ ଜୀବନ ଅଛି, ମାତ୍ର ଥଣ୍ଡାରେ ମଲାପରି ହୋଇ ଯାଇଅଛି । ସାପର ଏ ଅବସ୍ଥା ଦେଖି ତା ମନରେ ଦୟା ହେଲା । ସେ ତାକୁ ଟେକି ନେଇ ତା

ଦେହରୁ ବରଫ ଝାଡ଼ିଦେଲା ଓ ଉଷୁମ କରିବା ପାଇଁ ନିଜ ଜାମା ତଳେ ଗୁଞ୍ଜିକି ଲଗାଇ ରଖିଲା । କିଛି ସମୟ ପରେ ସାପର ଦେହ ଉଷୁମ ହୋଇଗଲା । ତାର ବଳ ଫେରି ଆସିଲା ।

ସାପର ପ୍ରକୃତି ଖରାପ । ସେ କି କୃଷୀର ଉପକାର ମାନନ୍ତା ? ଦେହରେ ବଳ ଆସିଲାକ୍ଷଣି ସେ କୃଷୀର ଛାତିରେ ଠେଞ୍ଚ ଉପରେ ଠେଞ୍ଚ ମାରିଲା । କୃଷୀ କଅଣ କରିବ ବୁଦ୍ଧି ଦିଶିଲା ନାହିଁ । ଗୁହୁଁ ଗୁହୁଁ ତା ଦେହରେ ସାପର ବିଷ ଚରିଗଲା । ସେ ମଲା ବେଳକୁ କହିଲା, "ଏ ଦୁଷ୍ଟ ସାପ ଶୀତରେ ପଡ଼ି ମରିଥାନ୍ତା । ମୁଁ ତାର ଜୀବନ ରକ୍ଷିବାରୁ ସିନା ନିଜେ ପ୍ରାଣ ହରାଇଲି । ମୋ କର୍ମର ଫଳ ପାଇଲି ।"

ଦୁଷ୍ଟ ଜୀବର ଉପକାର
ଦିଅଇ ବିପତ୍ତି ଫଳ ।

---

## ଛେଳି ଓ ବାଣୁଆ

ଦିନେ ଗୋଟିଏ ବଣୁଆ ଛେଳି ବଣ ଭିତରେ ବୁଲି ଡାଳ ପତ୍ର ଖାଉଥିଲା । ଜଣେ ଶିକାରୀ ତାକୁ ଦେଖିପାରି ତାକୁ ମାରିବା ପାଇଁ ତା ପଛେ ପଛେ ଗୋଡ଼ାଇଲା । କିଛିଦୂର ଯିବାପରେ ଶିକାରୀ ଛେଳିର ଖୁବ୍ ନିକଟରେ ପହଞ୍ଚିଗଲା । ଛେଳି ଭାବିଲା ସେ ଶିକାରୀ ହାତରେ ନିଶ୍ଚୟ ପ୍ରାଣ ଯିବ । ସେ ଆକୁଳ ହୋଇ ଚାରିଆଡ଼କୁ ଚାହିଁ ଗୋଟାଏ ଲଟାବୁଦା ଦେଖିଲା । ଜୀବନ ବିକଳରେ ସେ ସେହି

ଲଟା ଭିତରେ ପଶିଗଲା । ଦୈବ ଯୋଗକୁ ସେ ଲଟାରେ ପଶିବା-ବେଳେ ଶିକାରୀକୁ ଦେଖିପାରି ନଥିଲା । ସେ ଚାରିଆଡ଼କୁ ଚାହିଁଲା; କିନ୍ତୁ କୌଣସିଠାରେ ଛେଳିର ଚିହ୍ନ ଦେଖାଗଲା ନାହିଁ । ସେ ହତାଶ ହୋଇ ଫେରିଯିବାକୁ ବସିଲା ।

ଏଣେ ଛେଳି ମନେକଲା ଯେ ସେ ଶିକାରୀ ହାତରୁ ଖସି ଯାଇଛି; ତାର ଆଉ ଭୟ ନାହିଁ । ସେ ଲଟାବୁଦାରୁ ପତ୍ରଗୁଡ଼ିକ ଖାଇବାରେ ଲାଗିଲା । ପତ୍ରଗୁଡ଼ିକ ଯିବାରୁ ଲଟା ଭିତରେ ମେଲା ହୋଇଗଲା । ଛେଳିର ଖସ୍ ଖସ୍ ଶବ୍ଦ ଶୁଣି ଶିକାରୀ ଲଟାବୁଦା ଆଡ଼କୁ ଚାହିଁ ଛେଳିକୁ ଦେଖି ପାରିଲା । ଶିକାରୀ ଦୌଡ଼ିଯାଇ ତାକୁ ମାରି ପକାଇଲା । ମଲାବେଳକୁ ଛେଳି କହିଲା, "ମୁଁ କେଡ଼େ ବୋକାମି କଲି ! ଲଟାର ପତ୍ରଗୁଡ଼ିକ ମୋତେ ଶିକାରୀର ନଜରରୁ ଲୁଚାଇ ରଖିଥିଲା । ସେଗୁଡ଼ିକୁ ଖାଇଦେବାରୁ ସିନା ଶିକାରୀ ମୋତେ ଦେଖିଲା । ଯେଉଁ ପତ୍ରଗୁଡ଼ିକ ମୋର ଜୀବନ ରଖିଥିଲା, ମୁଁ ସେଗୁଡ଼ିକୁ ନଷ୍ଟ କଲି । ଏବେ ମୋ କୃତଘ୍ନତାର ଫଳ ପାଇଲି ।"

କୃତଘ୍ନତା ପାପ ମହା ଭୀଷଣ
ସେ ପାପୁଁ ମରଣ ହୁଅଇ ଜାଣ ।

---

## ବେଙ୍ଗ, ମୂଷା ଓ ଚିଲ

ବଣ ଭିତରେ ଗୋଟିଏ ସନ୍ତସନ୍ତିଆ ଜଳାଭୂମି । କେଉଁଠାରେ ପାଣିକାଦୁଅ; କେଉଁଠାରେ ଶରବଣ ବା ବୁଦା । ଏହିଠାରେ ଗୋଟିଏ ବେଙ୍ଗ ଓ ଗୋଟିଏ ମୂଷା ରହୁଥିଲେ । ବେଙ୍ଗ ବଡ଼

ବଳୁଆ ଓ ବୁଢିଆ । ମୂଷା ଥିଲା ଚଞ୍ଚଳ ଓ କୌଶଳୀ । ଦୁହେଁ ନିଜ ନିଜକୁ ବଡ଼ ମନେ କରୁଥାନ୍ତି ଓ ସେ ଜଳାଭୂମିର ଅଧିକାଂଶ ବୋଲି ଦାବୀ କରୁଥାନ୍ତି । ଦୁହିଁଙ୍କ ଭିତରେ ମନାନ୍ତର ରହିଥାଏ ଓ ଦେଖା ହେଲେ ପରସ୍ପର କଳି କରୁଥାନ୍ତି । ମୂଷା ମନେ କରୁଥାଏ, ସେ ହେଉଛି ଏ ସ୍ଥାନର ରାଜା; ବେଙ୍ଗର କିଛି ଅଧିକାର ନାହିଁ । ସେହିପରି ବେଙ୍ଗ ମନେ କରୁଥାଏ, ସେ ହେଉଛି ପ୍ରକୃତରେ ରାଜା, ମୂଷାର କିଛି ଅଧିକାର ନାହିଁ ।

କ୍ରମେ ଦୁହିଁଙ୍କର ବିବାଦ ଏତେଦୂର ବଢ଼ିଗଲା ଯେ ଶେଷରେ ନିଜନିଜର ଦାବୀ ସାବ୍ୟସ୍ତ କରିବାକୁ ଦୁହେଁଯାକ ଯୁଦ୍ଧ କରିବାକୁ ବାହାରିଲେ । ଯିଏ ଯୁଦ୍ଧରେ ଜିଣିବ ସେଇ ହେବ ସେଠାର ରାଜା ।

ଦୁହେଁଯାକ ଶରବଣକୁ ଯାଇ ଗୋଟିଏ ଲେଖାଏଁ ଶର ଆଣିଲେ ଓ ଏହାର ଗୋଟିଏ ମୁଣ୍ଡକୁ ଖୁବ୍‌ ଗୋଜିଆ କରି ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । ଦୁହେଁ ପରସ୍ପରକୁ ଚାହିଁ ଶର ମାରିବାକୁ ଛକି ରହିଲେ । କିପରି, କେତେବେଳେ ଶର ମାରିବେ ଚାହିଁଥାନ୍ତି ।

ସେମାନେ ଯୁଦ୍ଧପାଇଁ ପ୍ରସ୍ତୁତ ହେଉଥିବାବେଳେ ଗୋଟିଏ ଚିଲ ଉପରେ ଉଡ଼ି ଉଡ଼ି ସେମାନଙ୍କୁ ଦେଖୁଥିଲା । କିନ୍ତୁ ସେ ଦୁହେଁ ପରସ୍ପର ସଙ୍ଗେ କିପରି ଯୁଦ୍ଧ କରିବେ, ତାହା ଚିନ୍ତା କରୁକରୁ ଉପରକୁ ଆଦୌ ଚାହିଁ ନଥିଲେ । ଠିକ୍‌ ଯେତେବେଳେ ଦୁହେଁ ପରସ୍ପରକୁ ଶର ମାରିବାପାଇଁ ଲାଗି ଆସିଲେ ସେତିକି-ବେଳେ ଚିଲ ତଳକୁ ଓହ୍ଲାଇ ଆସି ଗୋଟିଏ ପଞ୍ଝାରେ ମୂଷାକୁ ଓ ଆର ପଞ୍ଝାରେ ବେଙ୍ଗକୁ ଧରି ଉଡ଼ିଗଲା ଓ ଗଛ ଉପରେ ବସି

ଦୁହିଁଙ୍କୁ ମାରି ଖାଇଲା । ଜଙ୍ଗଲଭୂମିର ରାଜା ବୋଲାଇବାକୁ କେହି ରହିଲେ ନାହିଁ ।

ଭେଦନ ପକ୍ଷର କଲ ହେଲେ
ଉତ୍କୃଷ୍ଟ ଲଭ କରେ ହେଲେ ।

---

## କାଉ କଅଣ ମୟୂର ହେବ ?

ଗୋଟିଏ ଡାମରା କାଉ ନିଜ ଦେହକୁ ଦେଖି ଭାବିଲା, "ମୋ ଦେହଟାଯାକ କଳା । ଆଉ ପକ୍ଷୀମାନଙ୍କର ପର ଭିନ୍ନ ଭିନ୍ନ ରଙ୍ଗର, କାହାର କାହାର ପର ନାନା ରଙ୍ଗରେ ଚିତ୍ରିତ । ତେଣୁ ସେମାନେ କେଡ଼େ ସୁନ୍ଦର ଦିଶୁଛନ୍ତି ? ସେମାନଙ୍କ ସାଥିରେ କଥାବାର୍ତ୍ତା ହେବାକୁ କିମ୍ବା ଖେଳି ବୁଲିବାକୁ ମୋତେ ଲଜ ମାଡ଼ୁଅଛି । ସେମାନେ ମଧ୍ୟ ମୋତେ ଘୃଣା କରୁଛନ୍ତି । ଅନ୍ୟ ଡାମରାକୁଆମାନେ ମୋର ଭଳି କଳା । ସେମାନଙ୍କ ସାଥିରେ ରହିବାରେ କି ଲଭ ! କିପରି ସୁନ୍ଦର ଦେଖାଯାନ୍ତି କି ସବୁପକ୍ଷୀ ମୋତେ ଆଦର କରନ୍ତେ, ଖାତିର କରନ୍ତେ ।"

ଏହିପରି ଚିନ୍ତା କରି ମନ ଦୁଃଖରେ ଯାଉ ଯାଉ ସେ ଗୋଟିଏ ଗଛମୂଳେ କେତୋଟି ମୟୂର ପର ପଡ଼ିଥିବାର ଦେଖିଲା । ତା ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଗଲା । ସେ ଭାବିଲା, ଏହି ପର-ଗୁଡ଼ିକ ନେଇ ମୋ ଦେହରେ ଖଞ୍ଜିଦେଲେ ମୁଁ ମଧ୍ୟ ମୟୂର ଭଳି

ସୁନ୍ଦର ଦିଶିବ । ତାହାହେଲେ ମୟୂରମାନେ ମୋତେ ସେମାନଙ୍କ ସାଥିରେ ମିଶାଇବେ । ଅନ୍ୟ ସୁନ୍ଦର ପକ୍ଷୀମାନେ ମଧ୍ୟ ମୋ ସଙ୍ଗରେ କଥାବାର୍ତ୍ତା କରିବାକୁ ଦଉଡ଼ିବେ ।

ଏହା ଭାବି ସେ ମୟୂର ପରଗୁଡ଼ିକ ନେଇ ନିଜ ଡେଣା ଓ ଲାଞ୍ଜରେ ଖଞ୍ଜି ଦେଲା ଓ ଆନନ୍ଦରେ ଡେଇଁ ଡେଇଁ ମୟୂରମାନଙ୍କ ଦଳରେ ପଶିଲା । କିନ୍ତୁ ମୟୂରମାନେ ତାକୁ ଦେଖିଲାକ୍ଷଣି ଥଟ୍ଟା କଲେ ଓ ଥଣ୍ଟରେ ଖୁମ୍ପି ପକାଇଲେ ।

କାଉ ବିଚରା କାନ୍ଦି କାନ୍ଦି ଆପଣା ଜାତିଭାଇଙ୍କ ପାଖକୁ ପଳାଇଲା । କିନ୍ତୁ ସେମାନେ ତାକୁ ପାଖରେ ନ ପୂରାଇ କହିଲେ, "ତୁ ଆମ ଜାତି ଛାଡ଼ି ମୟୂର ଜାତିରେ ମିଶିବାକୁ ଯାଇଥିଲୁ । ପରଠାରୁ ମାଗି ଆଣି କେଉଁ ଜାତି ବଡ଼ ହେଲାଣି ? ମୟୂର ହେବାକୁ ଚେଷ୍ଟାକରି ତୁ ଉପଯୁକ୍ତ ଫଳ ପାଇଛୁ । ଏଣିକି ତୋର ଆମ ସମାଜରେ ମଧ୍ୟ ସ୍ଥାନ ନାହିଁ ।"

କାଉ ଏବେ ଆପଣାର ଭୁଲ ବୁଝି ପାରିଲା । କିନ୍ତୁ ଆଉ ଉପାୟ ନଥିଲା । ସେ ଏକୁଟିଆ ରହି ଜୀବନ କଟାଇବାକୁ ବାଧ୍ୟ ହେଲା ।

ବେଶ ନୋହେ ବଡ଼ ପଣର ଲକ୍ଷଣ
ସାନ ସାନ, ବଡ଼ ନୋହେ କଦାଚନ ।

---

## ଲାଙ୍ଗୁଡ଼ହୀନ କୋକିଶିଆଳି

ଜଣେ ଲୋକ ଗୁଡ଼ିଏ କୁକ୍କୁଡ଼ା ପାଳିଥିଲା । ସେଗୁଡ଼ିକ ଦିନଯାକ ପଦାରେ ଚରି ବୁଲି ସଞ୍ଜବେଳକୁ ଫେରି ଆସନ୍ତି ।

ଲୋକଟି ସେମାନଙ୍କୁ ଗୋଟିଏ ଗୃହଘରେ ବନ୍ଦ କରି ରଖେ, କବାଟରେ ଗୃହ ବନ୍ଦ କରିଦିଏ ।

ଗୋଟିଏ କୋକଶିଆଳ ସେଗୁଡ଼ିକୁ ଖାଇବାକୁ ମନ କଲା ଗୃହରେ ଗୋଟାଏ କଣା କରି ସେ ପ୍ରତିଦିନ ରାତିରେ ଘର ଭିତରେ ପଶିଲା ଓ ଗୋଟିଏ ଦୁଇଟି କୁକ୍କୁଡ଼ା ମାରି ଖାଇଲା । ଏହିପରି ତିନି ଚାରିଦିନ ଗଲା । ବଗୁଚର ଆଠଟି କୁକ୍କୁଡ଼ା ନଷ୍ଟ ହେଲେ । ଶେଷରେ ସେ ଗୃହର କଣାତଳେ ଗୋଟିଏ ଜନ୍ତା ବସାଇଲା ।

ଅନ୍ୟଦିନ ପରି କୋକଶିଆଳ କଣାବାଟେ ପଶି କୁକ୍କୁଡ଼ା ଖାଇବାକୁ ମନ କଲା । କିନ୍ତୁ ଘରେ ପଶିଲାକ୍ଷଣି ଜନ୍ତାରେ ପଡ଼ିଗଲା । ଭାଗ୍ୟକୁ କେବଳ ତାର ଲାଞ୍ଜଟି ଜନ୍ତାରେ ଲାଗିଥିଲା । ସେ ପଳାଇବା ପାଇଁ ଭିଡ଼ି ହେଲା । ଅନେକ ବେଳଯାଏ ଟାଣି ଓଟାରି ହେବାରୁ ଶେଷରେ ଲାଞ୍ଜଟି ଛିଡ଼ିଗଲା । ଜନ୍ତାରୁ ମୁକ୍ତ ପାଇଲାକ୍ଷଣି ସେ ପ୍ରାଣ ଘେନି ପଳାଇଗଲା ।

ସେ ଭାବିଲା, "ଯାହାହେଉ ପ୍ରାଣଟା ରହିଗଲା । କିନ୍ତୁ ମୋର ଲାଙ୍ଗୁଡ଼ ନ ଥିବାର ଦେଖି ମୋର ଜାତିଭାଇମାନେ ମୋତେ ଥଟ୍ଟା କରିବେ । ସେ ଅପମାନ ସହି କିପରି ରହିବି ?" ଶେଷରେ ସେ ତାର ଜାତିଭାଇମାନଙ୍କ ପାଖକୁ ଯାଇ କହିଲା; "ଭାଇମାନେ, ମୁଁ ଆଜି ଆପଣମାନଙ୍କୁ ଗୋଟିଏ ଶୁଭ ସମ୍ବାଦ ଦେବି । ଆମର ଲାଞ୍ଜଗୁଡ଼ାକ ଯେ କେଡ଼େ ଅସୁବିଧାରେ ପକାଏ, ତାହା ଆପଣମାନଙ୍କ ଭିତରୁ ଅନେକେ ଜାଣନ୍ତି ନାହିଁ । ସମସ୍ତେ ସ୍ୱୀକାର କରିବେ ଯେ ଲାଞ୍ଜଦ୍ୱାରା ଆମର କିଛିମାତ୍ର ଉପକାର ହୁଏନାହିଁ । ଥରେ ଲାଞ୍ଜଟା କାଟିଦେଲେ ଦେଖିବେ କେଡ଼େ ସ୍ୱଚ୍ଛନ୍ଦରେ, କେଡ଼େ ବେଗରେ ଦୌଡ଼ିପାରିବେ । ମୋର ଲାଞ୍ଜ କାଟିବା ପରେ ମୁଁ କେଡ଼େ ଆନନ୍ଦ

ଅନୁଭବ କରୁଛୁ କହିହେବ ନାହିଁ । ଲାଞ୍ଜ ରଖିବା ଗୋଟାଏ ପୁରୁଣା-କାଳିଆ କଥା । ଆସନ୍ତୁ, ଆପଣମାନେ ନିଜ ନିଜର ଲାଞ୍ଜ କଟାଇ ସୁଖରେ ରହନ୍ତୁ, ଦେହର ଶୋଭା ବଢ଼ାନ୍ତୁ । କିପରି ସହଜରେ ଲାଞ୍ଜ କଟାଯାଇ ପାରିବ, ମୁଁ ତାର ଉପାୟ ବତାଇ ଦେବି ।”

ଅନ୍ୟ କୋକଶିଆଳମାନେ ଚୁପ୍ ହୋଇ ତାର ଉପଦେଶ ଶୁଣୁଥିଲେ । କେହି କେହି ଭାବୁଥିଲେ, ଲାଞ୍ଜ କଟାଗଲେ ଆମେ ପ୍ରକୃତରେ ବେଗରେ ଦୌଡ଼ି ପାରିବା ତ ! ବେଶି ସୁନ୍ଦର ଦିଶିବା ତ ! ଆଉ କେତେକେ ଭାବୁଥିଲେ; ଆଜଯାଏ ତ ଲାଞ୍ଜ ଥିଲା, କେହି ଆପତ୍ତି କରୁନଥିଲେ କି ଅସୁବିଧା ହେଉଛି ବୋଲି କହୁ ନଥିଲେ । ଆଜି ଏ ସମସ୍ତଙ୍କୁ ଲାଞ୍ଜ କାଟିବା ପାଇଁ ଉପଦେଶ ଦେଉଛି କାହିଁକି ?

ଗୋଟିଏ ବୁଢ଼ା କୋକଶିଆଳ ପ୍ରକୃତ ଘଟଣା ଅନୁମାନ କରି କହିଲା, “ଭାଇ, ତୁମେ ପ୍ରାଣ ନେଇ ଜନ୍ତାରୁ ଖସି ଆସିବା ପାଇଁ ଲାଞ୍ଜଟା କଟାଇ ଦେଲ । ଆମେ ଯଦି ତୁମଭଳି ସେହି ଅବସ୍ଥାରେ ପଡ଼ନ୍ତୁ, ତେବେ ଆମେ ମଧ୍ୟ ନିଜର ଲାଙ୍ଗୁଡ଼ କଟାଇ ଦେବାକୁ କୁଣ୍ଠିତ ହେବୁନାହିଁ । କିନ୍ତୁ ବର୍ତ୍ତମାନ ଲାଙ୍ଗୁଡ଼ ସକାଶେ ଆମର କିଛି ଅସୁବିଧା ହେଉନାହିଁ, ତେଣୁ ଲାଙ୍ଗୁଡ଼ କାଟିବାକୁ ଯିବା ଦରକାର କଅଣ ?”

ନ ବୁଝି ପର ଉପଦେଶ
ଶୁଣିଲେ ବିପଦ ଅବଶ୍ୟ ।

---

# ଛୋଟ ଚୋର ବଡ଼ ଚୋର

ଥରେ ଗୋଟିଏ ପିଲା ତା ସାଥିମାନଙ୍କ ସଙ୍ଗରେ ଖେଳୁଥିଲା । ଗୋଟିଏ ପିଲାର ସ୍ଲେଟ ପେନ୍ସିଲଟିଏ ଲୁଚାଇ ସେ ଘରକୁ ନେଇଗଲା । ମାଆ ପେନ୍ସିଲଟି ଦେଖି ଖୁସି ହୋଇ କହିଲା, "ଭଲ ପେନ୍ସିଲଟିଏ । ଘରେ ରଖି ଦେ । ସାବଧାନ ହୋଇ ଖେଳିବୁ, ଡାଣ୍ଡରେ ଅନ୍ୟ କାହାକୁ ଦେଖାଇବୁ ନାହିଁ ।"

ପିଲାଟି ପେନ୍ସିଲଟିଏ ଚୋରି କରି ଆଣିଛି ବୋଲି ତା ମାଆ ତାକୁ ଗାଳିଦେଲା ନାହିଁ; ଫେରାଇ ଦେବାକୁ କହିଲା ନାହିଁ, ବରଂ ତାକୁ ପ୍ରଶଂସା କଲା ।

ପିଲାଟି ସ୍କୁଲକୁ ପଢ଼ିବାକୁ ଗଲା । ସୁବିଧା ପାଇଲେ ଅନ୍ୟ ପିଲାଙ୍କ ସିଲଟ, ବହି, ପେନ୍‌ସିଲ ପ୍ରଭୃତି ଚୋରି କରି ଆଣିଲା । ମାଆ ସେ ସବୁ ଦେଖି ପୁଅକୁ ସାବାସ୍ ଦିଏ । ବଡ଼ ହେବାରୁ ସେ ଚୋରି ବ୍ୟବସାୟରେ ମାତିଲା । ସେ କାହାଘରୁ କଂସାବାସନ, କାହାଘରୁ ଲୁଗାପଟା, କାହାଘରୁ ଧାନ, ଚାଉଳ ଚୋରି କରି ଘରକୁ ଆଣିଲା । ମାଆ ତାକୁ ଥରେହେଲେ କହିଲା ନାହିଁ ଯେ ଚୋରି କରିବା ପାପ, ଅନ୍ୟାୟ । ଶେଷକୁ ସେ ଜଣେ ବଡ଼ ଚୋର ବୋଲି ଲୋକେ ଜାଣିଗଲେ । କିନ୍ତୁ ସେ ସହଜେ ଧରା ପଡ଼ିଲା ନାହିଁ ।

କ୍ରମେ ସେ ଖୁବ୍ ବଡ଼ ଚୋରି କରିବାକୁ ସାହସ କଲା । ଥରେ ସେ ଜଣେ ଧନୀ ଲୋକର ଘରେ ପଶି ଗୋଟିଏ ସ୍ତ୍ରୀ ଲୋକର ଦେହରୁ ଅଳଙ୍କାର ଚୋରି କରିବାକୁ ବସିଲା । ସ୍ତ୍ରୀ ଲୋକଟିର ନିଦ ଭାଙ୍ଗିଯିବାରୁ ସେ ପାଟିକଲା । ଘରର ଚାକର ଓ ଅନ୍ୟଲୋକେ ଉଠିଆସି ତାକୁ ଧରିଲେ ।

ପ୍ରକାଶରେ ଏତଲା ହୋଇଗଲା । ବିଚାରରେ ତାର ପାଞ୍ଚବର୍ଷ ଜେଲଦଣ୍ଡ ହେଲା । ସହରର ହାକ ତାର ମାଆ କଚେରୀକୁ ଆସି-ଥିଲା । ଦଣ୍ଡର ଆଦେଶ ପରେ ଦୁଇଜଣ କନେଷ୍ଟବଳ ତା ହାତରେ ହାତକଡ଼ା ଦେଇ, ଅଣ୍ଟାରେ ଦଉଡ଼ି ବାନ୍ଧି ନେଇ ଚାଲିଲେ ତାକୁ ଜେଲଖାନା ଆଡ଼କୁ ନେଲେ । ଅନ୍ୟ ଦେଖଣାହାରୀଙ୍କ ସଙ୍ଗରେ ତାର ମାଆ ମଧ୍ୟ ଗଲାଥାଏ । ଏହି ସମୟରେ ଯୁବକଟି କନେଷ୍ଟ-ବଳଦୁହିଁଙ୍କୁ କହିଲା, "ଏଇ ମୋର ମାଆ ଯାଉଛି, ତାକୁ ମୁଁ ପଦେ କଥା କହିଯିବି । ପାଞ୍ଚବର୍ଷ ଯାଏ ଜେଲଖାନାରେ ରହିବି । ମାଆକୁ ଦେଖି ପାରିବି ନାହିଁ । ଦୟାକରି ମୋତେ ଏତିକି ସୁବିଧା ଦିଅ ।"

ପ୍ରଥମରେ କନେଷ୍ଟବଳ ଦୁହେଁ ଏଥିରେ ରାଜି ହେଉ-ନଥିଲେ । ପରେ ତାର ବିକଳ ଦେଖି ଭାବିଲେ; "ଲୋକଟା କୁଆଡ଼େ ପଳାଇ ପାରୁନାହିଁ । ମାଆକୁ କଅଣ କହିବ, କହୁ । କ୍ଷତି କଅଣ ?"

ମାଆ ତା ପାଖକୁ ଆସିଲା । ସେ ତା କାନ ପାଖକୁ ମୁହଁ ନେବାରୁ ମାଆ ଭାବିଲା, "ପୁଅ କିଛି ଗୁପ୍ତ କଥା କହିବ ।" କିନ୍ତୁ ହଠାତ୍ ସେ ମାଆର କାନକୁ କାମୁଡ଼ି ଧରି ଏପରି ଟାଣିଲା ଯେ କାନଟା ଛିଣ୍ଡିଯାଇ ରକ୍ତ ଝରଝର ବୋହିଲା । ତାର ମାଆ ଚିତ୍କାର କରି ପୁଅକୁ ଗାଳି ଦେଲା । ଲୋକେ ମଧ୍ୟ ତାକୁ ଗାଳି-ଦେଇ କହିଲେ, "ତୁ ମଣିଷ ନୋହୁ, ପଶୁ । ଚୋରି କରି ଜେଲ ଯାଉଛୁ, ସେଥିରେ ପୁଣି ମାଆଟାର କାନ ଛିଣ୍ଡାଇ ଦେଲୁ ।"

ଯୁବକ କହିଲା, "ଏ ମୋର ମାଆ ନୁହେ ସେ ମୋର ଶତ୍ରୁ । ଆଜି ମୁଁ ତାହାରି ଯୋଗେ ଜେଲ ଯାଉଛି । ପିଲାଦିନେ ମୁଁ ଛୋଟ ଛୋଟ ଚୋରି କଲାବେଳେ ସେ କେବେ ମୋତେ ଗାଳି ନ ଦେଇ ପ୍ରଶଂସା କରୁଥିଲା । ପରେ ବଡ଼ ବଡ଼ ଚୋରି କରିବାରୁ ସେ

ଆନନ୍ଦିତ ହୋଇ ମୋତେ ଉତ୍ସାହ ଦେଉଥିଲା । ତାରି ଯୋଗୁ ମୋର ଆଜ ଏ ଦଶା ।" ଲୋକେ ତାର ମାଆକୁ ଛି ଛି କଲେ ।

ମୂଳରୁ ଧ୍ୱଂସକର ଦୋଷ
ନୋହିଲେ ଶେଷେ ଯିବ ନାଶ ।

---

## ଯାହାର କାମ ସୁନ୍ଦର, ସେ ପ୍ରକୃତରେ ସୁନ୍ଦର

ବଣ ଭିତରେ ଗୋଟିଏ ହରିଣ ରହୁଥିଲା । ଦିନେ ସେ ଝରଣାରେ ପାଣି ପିଉ ପିଉ, ସେଥିରେ ନିଜର ଛାଇକୁ ଦେଖି ଭାବିଲା; "ବାଃ, ମୋର ଶିଙ୍ଗ ଯୋଡ଼ିକ କେଡେ ସୁନ୍ଦର ! ଉପରକୁ ଉପରକୁ ଶାଖା ମେଲି ଯାଇଛି; ଅଗଗୁଡିକ କି ସୂକ୍ଷ୍ମ ! କି ଚିକ୍କଣ ! ଆଉ କେଉଁ ଜୀବର ଏଡ଼େ ସୁନ୍ଦର ଶିଙ୍ଗ ଦେଖାନାହିଁ ।" ଏହାପରେ ହରିଣ ନିଜ ଗୋଡ଼କୁ ଚାହିଁ ଭାବିଲା, "ବିଧାତା ମୋତେ ଏଡ଼େ ସୁନ୍ଦର ଶିଙ୍ଗ ଦେଲେ, କିନ୍ତୁ ତା ସାଥିରେ ଏପରି ସରୁ ସରୁ ଗୋଡ଼ କାହିଁକି ଦେଲେ ? ଏହାକୁ ଚାହିଁଲେ ମୋତେ ଲାଜ ମାଡ଼ୁଛି । ମୋ ଦେହକୁ ଏ ଗୋଡ଼ କେଡେ ଅସୁନ୍ଦର ଦିଶୁଥିବ ? ଗୋଡ଼ଗୁଡ଼ିକ ଶିଙ୍ଗ ପରି ସୁନ୍ଦର ହୋଇଥିଲେ ପଶୁମାନଙ୍କ ଭିତରେ ସବୁଠାରୁ ସୁନ୍ଦର ବୋଲି ମୁଁ ପ୍ରଶଂସା ପାଇଥାନ୍ତି ।"

ସେ ନିଜ ଗୋଡ଼ ବିଷୟରେ ମନ ଦୁଃଖ କରୁ କରୁ ହଠାତ୍ ଗୋଟିଏ ବାଘ ଦେଖି ପ୍ରାଣ ବିକଳରେ ଦୌଡ଼ିଲା ଓ ବାଘଠାରୁ ବହୁତ ଦୂରକୁ ଚାଲିଗଲା । ସେ ଭାବିଲା, "ମୋର ଗୋଡ଼ ଗୁଡ଼ିକ

ଅସୁନ୍ଦର ହେଲେ କଅଣ ହେବ, ସେହି ଗୋଡ଼ ମୋ ପ୍ରାଣ ରଖିଲା ।"

କିନ୍ତୁ ବାଘ ଏତିକିରେ ହରିଣକୁ ଧରିବାର ଆଶା ଛାଡ଼ିଲା ନାହିଁ । ମେଲା ପଡ଼ିଆ ପାର ହୋଇ ହରିଣ ବଣ ଭିତରେ ପଶିଲା; ବାଘ ମଧ୍ୟ ତା' ପଛେ ପଛେ ଦୌଡ଼ିଲା । ହରିଣ ବାଘକୁ ଦେଖି ପୁଣି ଦୌଡ଼ିବାକୁ ଲାଗିଲା । ମାତ୍ର ଗଛ ବୁଦା ଭିତରେ ସେ ବେଗରେ ଦୌଡ଼ି ପାରିଲା ନାହିଁ । ବାଘ ତା ପାଖକୁ ଲାଗି ଆସିଲା । ଏହି ସମୟରେ ହରିଣର ଶିଙ୍ଗ ଗୋଟିଏ ବୁଦାର ଡାଳ-ଭିତରେ ଛନ୍ଦିହୋଇ ଯିବାରୁ ସେ ଅଟକିଗଲା । ଡାଳଭିତରୁ ଶିଙ୍ଗ ବାହାର କରିବା ପାଇଁ ଚେଷ୍ଟା କରୁ କରୁ ବାଘ ତା ଉପରକୁ କୁଦି ପଡ଼ି ତା ବେକକୁ ଧରିଲା ।

ଜୀବନ ଯିବା ପୂର୍ବରୁ ହରିଣ ଭାବିଲା, "ମୋର ଗୋଡ଼ ଅସୁନ୍ଦର ବୋଲି ମୁଁ ତାକୁ ନିନ୍ଦା କରୁଥିଲି କିନ୍ତୁ ସେଇ ଗୋଡ଼ ମୋତେ ବାଘ ମୁହଁରୁ ରକ୍ଷା କରିଥିଲା; କିନ୍ତୁ ଯେଉଁ ସୁନ୍ଦର ଶିଙ୍ଗ ପାଇଁ ମୁଁ ଗର୍ବ ଅନୁଭବ କରୁଥିଲି, ସେହି ଶିଙ୍ଗ ଏବେ ମୋର ମରଣର କାରଣ ହେଲା । ଯାହା ଦେଖିବାକୁ ସୁନ୍ଦର, ତାହା ପ୍ରକୃତରେ ସୁନ୍ଦର ନୁହେଁ, ଯାହାର କାମ ସୁନ୍ଦର ତାହାହିଁ ପ୍ରକୃ-ତରେ ସୁନ୍ଦର ।"

ଦେଖିବାକୁ ହେଉ ଯେତେ ସୁନ୍ଦର
କାମକୁ ନ ହେଲେ ତହିଁ କି ଫଳ ?
ନ ଥାଉ ପଛକେ ରୂପ ସୁନ୍ଦର
ଗୁଣ ଥିଲେ ନର ଲଭେ ଆଦର ।

---

# କୁକ୍କୁର ଓ ହେଣ୍ଟାବାଘ

ଜଣେ ଲୋକର ଗୋଟିଏ କୁକ୍କୁର ଥିଲା । ସେ ତାକୁ ପ୍ରତିଦିନ ଭଲକୁଟେ ମାଂସ ଖାଇବାକୁ ଦେଉଥିବାରୁ ସେ ବେଶ୍ ମୋଟା ହୋଇଥିଲା ଓ ତାର ଦେହଟି ଚିକ୍କଣ ଦିଶୁଥିଲା । ଦିନେ ରାତିରେ କୁକ୍କୁରଟି ଗାଁ ବାହାରେ ବୁଲୁ ବୁଲୁ ଗୋଟିଏ ହେଣ୍ଟା-ବାଘକୁ ଦେଖିଲା । ହେଣ୍ଟାବାଘର ହାଡ଼ ଗଣିହୋଇ ଯାଉଥିଲା ଓ ତା ଦେହର ଲୁମ ଉପୁଡ଼ି ଯାଇଥିଲା । ତାକୁ ଦେଖି କୁକ୍କୁର ଜାଣି ପାରିଲା ଯେ ଖାଇବା ନ ପାଇ ତାର ଏହି ଅବସ୍ଥା ହୋଇଅଛି । ହେଣ୍ଟାବାଘ ପଚାରିଲା, "ତୁମେ ଭଲ ଦେଖାଯାଉଛ । ତୁମ ଦେହ କେଡ଼େ ଚିକ୍କଣ ? ତୁମ ଆଖି ଯୋଡ଼ିକ କେଡ଼େ ଉଜ୍ଜ୍ୱଳ ? ମୁଁ ରାତିଯାକ ବୁଲି ବୁଲି କେବେ ହେଲେ ପେଟପୂରା ଖାଇବାକୁ ପାଉ-ନାହିଁ । ତୁମେ କିପରି ଏତେ ଖାଇବାକୁ ପାଉଅଛ ?"

କୁକ୍କୁର କହିଲା, "ମୋର କେବେ ଖାଇବାର ଅଭାବ ନାହିଁ । ପ୍ରତିଦିନ ମୋର ମାଲିକ ମୋତେ ଯଥେଷ୍ଟ ମାଂସ ଖାଇବାକୁ ଦିଅନ୍ତି । ତେଣୁ ମୋର ଦେହଟି ଏପରି ମୋଟା ହୋଇଅଛି, ମୋ ଦେହରେ ମଧ୍ୟ ଯଥେଷ୍ଟ ବଳ ଅଛି ।"

ହେଣ୍ଟାବାଘ ବିସ୍ମିତ ହୋଇ ପଚାରିଲା, "ସେ ତୁମକୁ ପ୍ରତି-ଦିନ କାହିଁକି ମାଂସ ଖାଇବାକୁ ଦିଅନ୍ତି ?"

କୁକ୍କୁର ଉତ୍ତର ଦେଲା, "ମୁଁ ତାଙ୍କ ପାଇଁ କିଛି କାମ କରେ । ଅବଶ୍ୟ କାମଟା କଠିନ ନୁହେ । ରାତିରେ ମୁଁ ଜଗିଲି ରହିଥାଏ; ଯେକିହି ଚୋର କରିବାକୁ ଆସିଲେ ମୁଁ ଭୁକି ଉଠେ ଓ ମୋର ମାଲିକ ସାବଧାନ ହୋଇଯାନ୍ତି । ଚୋର ପଳାଇଯାଏ ।"

ହେଟାବାଘ କହିଲା, "ଏ କାମଟା ପ୍ରକୃତରେ ଖୁବ୍ ସହଜ । ଏତିକ କାମ କରି ପେଟପୂରା ଭଲ ଖାଇବାକୁ ମିଳିଲେ ଖୁବ୍ ସୁଖର କଥା । ଏ କାମ ମୁଁ ସ୍ୱଚ୍ଛନ୍ଦରେ କରି ପାରିବି । ମୋତେ ତୁମ କାମରେ ରଖାଇ ଦିଅନ୍ତ କି ମୁଁ ସୁଖରେ ରହନ୍ତି । ମୋର ଅବସ୍ଥା ଦେଖି ଜାଣି ପାରୁଥିବ ଯେ ଆଉ କିଛିଦିନ ପରେ ମୋର ପ୍ରାଣ ରହିବ ନାହିଁ ।"

କୁକ୍କୁର କହିଲା, "ହଁ, ତୁମେ ତାହା ହିଁ କର । ବଣରେ ଖରାବର୍ଷାରେ ବୁଲି ଉପାସ ରହିବାଠାରୁ ଘରଭିତରେ ରହି ନିଶ୍ଚିନ୍ତରେ ଖାଇବାକୁ ପାଇବା ଲକ୍ଷଗୁଣରେ ଭଲ ।"

ଏହି ସମୟରେ ହେଟାବାଘ ଦେଖିଲା ଯେ କୁକ୍କୁରର ବେକ ଚାରିପାଖେ ଗୋଟାଏ ଚମଡ଼ା ପଟି ରହିଛି । ସେ ବିସ୍ମିତ ହୋଇ ପଚାରିଲା, "ଭାଇ, ତୁମ ବେକରେ ସେଇଟା କଅଣ ?"

କୁକ୍କୁର କହିଲା, "ସେଇଟା ଗୋଟାଏ ଚମଡ଼ା ପଟି । ଦିନବେଳା ମୋର ମାଲିକ ସେଥିରେ ଗୋଟାଏ ଲୁହା ଜଞ୍ଜିର ଲଗାଇ ମୋତେ ବାନ୍ଧି ରଖନ୍ତି, ସଞ୍ଜ ହେଲେ ଫିଟାଇ ଦିଅନ୍ତି । ଏଥିରେ ମୋର କିଛି ଅସୁବିଧା ହୁଏନାହିଁ । ଦିନଯାକ ମୁଁ ବନ୍ଧା ହୋଇ ଶୋଇଥାଏଁ; ଖାଇଲାବେଳ ହେଲେ ମୋତେ ଖାଇବାକୁ ଦିଆଯାଏ ଓ ମୁଁ ଖାଇସାରି ପୁଣି ଶୋଇପଡ଼େ । ଦିନଯାକ ଶୋଇବା ଓ ଖାଇବା ଛଡ଼ା ମୋର ଆଉ କିଛି କାମ ନଥାଏ ।"

ହେଟାବାଘ ବ୍ୟସ୍ତ ହୋଇ କହିଲା, "ଭାଇ, ତାହାହେଲେ ତୁମେ ଯେଉଁ ଖାଇବାକୁ ପାଅ, ସେଥିପାଇଁ ତୁମେ କାମ କର, ତାହା ସଙ୍ଗେ ତୁମର ସ୍ୱାଧୀନତା ମଧ୍ୟ ବିକି ଦେଇଛ ।"

କୁକ୍କୁର କହିଲା, "ହଁ, ତୁମେ କହିପାର ଯେ ମୁଁ ମୋର ସ୍ୱାଧୀନତା ମଧ୍ୟ ହରାଇଛି ।"

ଏହା ଶୁଣି ବେଙ୍ଗବାଦ କହିଲା, "ସ୍ୱାଧୀନତାକୁ ଜଳାଞ୍ଜଳି ଦେଇ ଭଲ ଖାଇବା ପିଇବା ମୋ ଧାତୁରେ ଚଳିବ ନାହିଁ । ମୁଁ ବରଂ ନ ଖାଇ ନ ପିଇ ସ୍ୱାଧୀନ ଭାବରେ ବୁଲି ମରିବି, କିନ୍ତୁ ପରର ଅଧୀନ ହୋଇ ରହି ପାରିବି ନାହିଁ । ତୁମେ ଯାହାକୁ ସୁଖ ମଣୁଛ, ମୋ ମତରେ ସେ ପରମ ଦୁଃଖ ।"

ସ୍ୱାଧୀନତା ଅଟେ ପରମ ଧନ
ତା' ବିନା ବିଫଳ ସିନା ଜୀବନ ।

---

# ଝିଙ୍କ ଓ ସାପ

ଥରେ ଗୋଟିଏ ଝିଙ୍କ ବଣ ଭିତରେ ବୁଲି ଆହାର ଖୋଜୁଥିଲା । ଏହି ସମୟରେ ପ୍ରବଳ ଝଡ଼ ବର୍ଷା ଆସିଲା । ପବନରେ କେତେ ଗଛ ଭାଙ୍ଗି ପଡ଼ିଲା । ଝିଙ୍କ ପ୍ରାଣ ଭୟରେ କେଉଁଠି ଆଶ୍ରା ନେବ ବୋଲି ଏଣେତେଣେ ଧାଇଁଲା । କିଛି ଦୂରରେ ପଥର ସନ୍ଧିରେ ଗୋଟିଏ କୋରଡ଼ ଦେଖି ସେ ତାହା ଭିତରେ ରହିଯିବାକୁ ସ୍ଥିରକଲା । ସେ କୋରଡ଼ ଦୁଆର ମୁହଁରେ ପହଞ୍ଚି ଦେଖେତ ସେଥିରେ ଗୋଟିଏ ସାପ ତାର ଛୁଆପିଲା ଧରି ରହିଛି । ଝିଙ୍କ ବିନୟ ହୋଇ କହିଲା, "ଭାଇ, ଏ ଝଡ଼ରେ ପଦାରେ ରହି ହେଉନାହିଁ । ମୋତେ ତୁମ ଘରେ ଟିକିଏ ଆଶ୍ରା ଦିଅ ।" ସାପ କହିଲା, "ହେଉ, ତୁମେ ବିପଦରେ ପଡ଼ିଛ । ଆମ ପାଖରେ ରହିଥାଅ । ଝଡ଼ ଛାଡ଼ିଗଲେ ତୁମ ନିଜ ଘରକୁ ଚାଲିଯିବ ।"

ସାପ କୋରଡ଼ ଭିତରେ ଝିଙ୍କ ପଶିଲା । ତାର ଗୋଡଆ ପରଗୁଡ଼ାକ ସାପମାନଙ୍କ ଦେହରେ ବାଜି କଷ୍ଟ ଦେଉଥାଏ । କେତେକଙ୍କ ଦେହରେ ଫୁଟି ରକ୍ତ ବୋହିଲା । ତଥାପି ସେମାନେ ଝିଙ୍କକୁ ଛଡ଼ ଦେଲେ ନାହିଁ । ଯେତେଦୂର ସମ୍ଭବ ସେତେଦୂରରେ ରହି ଝିଙ୍କକୁ ଜାଗା ଛାଡିଦେଲେ ।

କିନ୍ତୁ ଝିଙ୍କର ସେମାନଙ୍କ ଅସୁବିଧା ପ୍ରତି ଆଦୌ ଦୃଷ୍ଟି ନଥାଏ । ସେ ଯଥେଷ୍ଟ ଜାଗା ମାଡ଼ି ବସିଲା । ତାର ପରରେ ସେମାନଙ୍କ ଦେହର ନାନା ସ୍ଥାନରେ ଘାଆ ହୋଇଗଲା । ଶେଷରେ ସେମାନେ ଆଉ ସହି ପାରିଲେ ନାହିଁ । ଏଣେ ଝଡ଼ ମଧ କମି ଆସିଲା । ତହୁଁ ସାପ କହିଲା, "ଝଡ଼ କମି ଗଲାଣି । ଏ ଛୋଟଘରେ ସମସ୍ତଙ୍କ ଚଳିବାପାଇଁ ଜାଗା ହେଉନାହିଁ । ଏବେ ତୁମେ ନିଜ ଘରକୁ ଚାଲିଯାଅ ।" ଝିଙ୍କ କହିଲା, "ମୁଁ ଯିବି କୁଆଡ଼େ ? ଏ ଘରଟି ମୋର । ତୁମର ଅସୁବିଧା ହେଉଥିଲେ ତୁମେ ବାହାରି ଯାଅ । ମୁଁ ଯିବନାହିଁ ।"

ସାପ କହିଲା, "ଏ ପରା ମୋ ଘର । ମୁଁ ଯିବି କୁଆଡ଼େ ?"

କିନ୍ତୁ ଝିଙ୍କ ତାର ପରଗୁଡିକ ମେଲାଇ ଦେଇ କହିଲା, "କେବେ ଏ ତୁମର ଘର ଥିଲା; ବର୍ତ୍ତମାନ ମୋର । ମୁଁ ବେଶ୍ ସୁଖରେ ଅଛି । ତୁମକୁ କଷ୍ଟ ହେଉଛି ତ ବାହାରିଯାଅ ।"

ସାପ ତାର ପିଲାମାନଙ୍କୁ ନେଇ କୋରଡ଼ରୁ ପାଉ ଯାଉ କହିଲା, "ଦୁଷ୍ଟକୁ ଦୟା ଦେଖାଇବାର ଫଳ ଏବେ ପାଇଲି ।"

ଦୁଷ୍ଟକୁ ଦିଏ ଯେ ଆଶ୍ରୟ,
ବିପଦେ ପଡ଼େ ସେ ନିଶ୍ଚୟ ।

---

# କୁଆ ଓ ବିଲୁଆ

ଥରେ ଗୋଟିଏ କୁଆ ଆହାର ଖୋଜି ବୁଲୁଥିଲା । ସେ ଜଣେ ମାଂସବିକ୍ରାଳିର ଦୋକାନରୁ ଖଣ୍ଡିଏ ମାଂସ ଧରି ଉଡ଼ିଗଲା ଓ ଗଛଡାଳରେ ବସି ଖାଇବାକୁ ମନ କଲା । ସେହି ଗଛମୂଳରେ ଗୋଟିଏ ଗାତରେ ବିଲୁଆଟିଏ ରହୁଥିଲା । ସେ ଦେଖିଲା, ଗୋଟିଏ କାଉ ଥଣ୍ଟରେ ଖଣ୍ଡିଏ ମାଂସ ଧରି ଗଛଡାଳରେ ବସିଅଛି । ମାଂସ ଖଣ୍ଡିକ ଖାଇବାପାଇଁ ତା ଜିଭରୁ ଲାଳ ବୋହିଲା । କିପରି ସେ ମାଂସ ଖଣ୍ଡିକ ପାଇବ, ଚିନ୍ତା କରିବାକୁ ଲାଗିଲା ।

ଶେଷରେ ସେ ଗୋଟିଏ ଉପାୟ ସ୍ଥିର କଲା । ଗଛତଳେ ଛିଡ଼ା ହୋଇ ସେ କୁଆକୁ କହିଲା, "ବାଃ, ତୁମେ କେଡ଼େ ସୁନ୍ଦର ! ତୁମର ରଙ୍ଗଟି କେଡ଼େ ଚମତ୍କାର ! ଚକ୍‌ଚକ୍ ଦିଶୁଛି । ପକ୍ଷୀ-ମାନଙ୍କରେ ତୁମେ ରାଣୀ । ତୁମକୁ ଦେଖି ମୁଁ ଆଖି ଫେରାଇ ନେଇ ପାରୁନାହିଁ । ଆଃ ! ତୁମର ଥଣ୍ଟଟି କିପରି ସୁନ୍ଦର ଦେଖାଯାଉଛି । ଆଜି କୌଣସି ପକ୍ଷୀର ଏଭଳି ଲମ୍ବ ଓ ସୁନ୍ଦର ଥଣ୍ଟ ମୁଁ ଦେଖି ନଥିଲି । ତୁମର ଚକ୍‌ଚକ୍ ଡେଣା ଦୁଇଟି ମଖମଲ କନାଠାରୁ ବଳି ସୁନ୍ଦର ଓ ଚିକ୍‌କଣ । ଗୋଲ ଗୋଲ ଉଜ୍ଜ୍ୱଳ ଆଖି ଯୋଡ଼ିକର ତୁଳନା ନାହିଁ । ଭଗବାନ୍ ତୁମକୁ ଏଡ଼େ ସୁନ୍ଦର କରି ଗଢ଼ିଛନ୍ତି; ଖାଲି ତୁମକୁ ଗାଇବାର ଶକ୍ତି ଦେଇଥିଲେ ତୁମକୁ ସମସ୍ତେ ଆଦର କରନ୍ତେ; ପକ୍ଷୀମାନେ ତୁମକୁ ରାଣୀ କରନ୍ତେ ।"

କୁଆ ଡାଳରେ ବସି ବିଲୁଆ ମୁହଁରୁ ଏପରି ପ୍ରଶଂସା ଶୁଣି ଭୋଳ ହୋଇଗଲା । ସେ ଭାବିଲା, "ଏ ବିଲୁଆ ମନେ କରୁଛି ଯେ ମୁଁ ଗାଇ ପାରେନାହିଁ । ଏହାକୁ ମୋର ସ୍ୱର ଶୁଣାଇ ଦେବା

ଦରକାର ।” ଏହାପରେ ବଗରେ ସେ ରାବ ଉଠିଲା, “କାଆ, କାଆ ।” ତା ମୁହଁରୁ ମାଂସ ଖଣ୍ଡିକ ତଳେ ଖସି ପଡ଼ିଲା ଓ ବିଲୁଆ ସଙ୍ଗେ ସଙ୍ଗେ ତାହାକୁ ଖାଇ ଦେଇ କହିଲା, “ହଁ, ମୋର ଭୁଲ ବୁଝିପାରିଲି, ତୁମର ସ୍ୱରଟି ମଧ୍ୟ ବେଶ୍ ମଧୁର । କିନ୍ତୁ ତୁମର ବୁଦ୍ଧିଟି ଊଣା ।”

କୁଆ ଆପଣାର ବୋକାମି ବୁଝିପାରି ମନ ଦୁଃଖରେ କହିଲା, “ପ୍ରକୃତରେ ମୋର ବୁଦ୍ଧି ଊଣା । ମୋର ଯଦି ବୁଦ୍ଧି ଥାଆନ୍ତା, ତେବେ ମୁଁ କଅଣ ବିଲୁଆର ପ୍ରଶଂସାରେ ଫୁଲିଯାଇ ତାକୁ ସ୍ୱର ଶୁଣାଇବାକୁ ଯାଇଥାନ୍ତି ନା ବିଲୁଆ ମୋର ମାଂସ ଖଣ୍ଡିକ ପାଇଥାନ୍ତା ?”

ନିଜ ପ୍ରଶଂସା ଯେତୁ ଶୁଣେ
ଜାଣିବ ସେହୁ ମୂର୍ଖ ଜଣେ ।

---

## ପୋତା ଧନ

କୋହିଏ ଗ୍ରାମରେ ଜଣେ କୃଷୀ ଥିଲା । ସେ ଖୁବ୍ ପରିଶ୍ରମୀ; ତେଣୁ ସେ ନିଜ ଜମିରୁ ଯଥେଷ୍ଟ ଫସଲ ପାଉଥିଲା ଓ ସୁଖରେ ଚଳୁଥିଲା । ତାର ପୁଅ ଗୁଡ଼ିଏ ଥିଲେ; କିନ୍ତୁ ସେମାନେ ସମସ୍ତେ ନିତାନ୍ତ ଅଳସୁଆ ଥିଲେ । ଖେଳିବା, ବୁଲିବା, ନିଦରେ ପଡ଼ିରବାରେ ସେମାନଙ୍କର ବେଳ ଯାଉଥିଲା । ବାପ କ୍ଷେତରେ କାମ କରିବାକୁ ଡାକିଲେ ସେମାନେ ମୁହଁ ମୋଡ଼ି ଦେଇ ଚାଲି ଯାଉଥିଲେ ।

ଚାଷୀ ବୁଢ଼ା ହୋଇ ଆସିଲା; ଆଉ ବେଶି ପରିଶ୍ରମ କରିପାରିଲା ନାହିଁ । ତାର ମନରେ କଷ୍ଟ ହେଲା । ପୁଅଗୁଡ଼ାକ ଅଳସୁଆ ହେଲେ । ସେ ମଲାପରେ ସେମାନେ ଖାଇବାକୁ ନ ପାଇ ମରିବେ । ପୁଅମାନଙ୍କୁ ଶିକ୍ଷା ଦେବାପାଇ ସେ ଗୋଟାଏ ଉପାୟ କଲା ।

ଦିନେ ସେ ସବୁ ପୁଅଙ୍କୁ ଡାକି କହିଲା, "ତୁମେମାନେ ମୋର ପୁଅ । ମୋର ବେଶିଦିନ ବଞ୍ଚିବାର ଆଶା ନାହିଁ । ମୁଁ ସଂସାରରୁ ଯିବା ଆଗରୁ ତୁମେ କିପରି ସୁଖରେ ଚଳିବ ତାର ବ୍ୟବସ୍ଥା କରିଯିବି । ମୋର ଯାହା ଜମି ଅଛି, ସେଥିରେ ତୁମ ସମସ୍ତଙ୍କର ସମାନ ଅଧିକାର ରହିବ । ମୋର ସବୁ ଧନ ଏଇ ଜମିରେ ପୋତି ରଖିଛି । ବେଶି ଗଭୀରରେ ନୁହେଁ, ମୋଟେ ହାତକ ଭିତରେ । ତୁମେମାନେ ଭଲ କରି ଖୋଳି ସେ ଧନକୁ ସମାନ ଭାବରେ ବାଣ୍ଟି ନେବ ।"

ପୁଅମାନେ ଭାବିଲେ ଯେ ବାପା ନିଶ୍ଚୟ ଜମିରେ କୌଣସି-ଠାରେ କିଛି ସୁନା ପୋତି ଯାଇଛନ୍ତି । ତେଣୁ ତାଙ୍କ ମୃତ୍ୟୁପରେ ପୁଅମାନେ କୋଡ଼ି କାଙ୍କ ଧରି ସବୁ ଜମି ଖୋଳିବାରେ ଲାଗିଲେ; କିନ୍ତୁ କୌଣସିଠାରେ ସୁନାରୁପାର ନାମଗନ୍ଧ ମିଳିଲା ନାହିଁ । ତେଣୁ ସେମାନେ ମନଦୁଃଖ କଲେ ।

ଜମି ଖୋଳା ହୋଇ ମାଟି ଗୁଣ୍ଡ ହୋଇଥିଲା । ସେମାନେ ସେଥିରେ ଫସଲ କଲେ । ଫସଲ ମଧ୍ୟ ଖୁବ୍ ଭଲ ହେଲା । ଅନ୍ୟ-ମାନେ ଯେତେ ଫସଲ ଅମଳ କଲେ ଏମାନେ ତାହାଠାରୁ ବେଶି ଅମଳ କଲେ । ସେମାନଙ୍କର ଖାଇବା ପରି ଆହୁରି ଧାନ ମୁଗ ବଳି ପଡ଼ିଲା । ସେମାନେ ସେସବୁ ବିକି କିଛି ଟଙ୍କା ପାଇଲେ । ଏବେ ସେମାନେ ବୁଝିଲେ ଯେ ବାପାଙ୍କର କଥା ସତ । କିନ୍ତୁ ସେ ଟଙ୍କା

ସୁନା ରଖି ଯାଇ ନଥିଲେ; ମାତ୍ର କଠିନ ପରିଶ୍ରମ କଲେ ଜମିରୁ ସୁନାରୁପା ମିଳିପାରିବ ବୋଲି ଶିକ୍ଷା ଦେଇ ଯାଇଥିଲେ ।

ଧନର ମୂଳ ପରିଶ୍ରମ
ତା ବିନା ନ ମିଳିବ ଧନ ।

---

## ଯେସାକୁ ତେସା

ଗୋଟିଏ ବଣ ଭିତରେ ଏକ କୋକଶିଆଳି ଥିଲା । ତାର ଗୋଟିଏ କାଣ୍ଠିଆବଗ ସାଥିରେ ବନ୍ଧୁତା ହେଲା । ଦିନେ କୋକ-ଶିଆଳି ଭୋଜି ଖାଇବା ପାଇଁ ତାର ବନ୍ଧୁମାନଙ୍କୁ ନିମନ୍ତ୍ରଣ କଲା । ସେମାନଙ୍କ ଭିତରେ କାଣ୍ଠିଆବଗ ମଧ୍ୟ ଥିଲା । ସେ ଅତି ଆନନ୍ଦରେ ଠିକ୍ ସମୟରେ କୋକଶିଆଳି ଘରେ ପହଞ୍ଚିଲା । ଅତିଥିମାନେ କିଛି ବେଳଯାଏ ଦୂର୍ ଖେଳ ତାମସାରେ ମାତିଲେ । ତା ପରେ ଖାଇବାକୁ ବସିଗଲେ । କୋକଶିଆଳି ଗୋଟିଏ ବଡ଼ ଥାଳିରେ ପାତଳା କ୍ଷୀର ପରଷି ଦେଇ କାଣ୍ଠିଆବଗକୁ ଡାକି କହିଲା, "ଆସ, ଆମେ ଦୁଇବନ୍ଧୁ ଏକାଠି ଖାଇବା ।" ଦୁହେଁ ଖାଇ ବସିଲେ; କିନ୍ତୁ ବଗ ଯେତେ ଚେଷ୍ଟାକଲେ ସୁଦ୍ଧା ତା ଥଣ୍ଟରେ କ୍ଷୀର ଆସିଲା ନାହିଁ । ଖାଲି ଥାଳିରେ ଥଣ୍ଟ ମାରିବା ହିଁ ସାର ହେଲା । କୋକଶିଆଳି ଜିଭରେ ଚକୁଚକୁ କରି କ୍ଷୀର ଖାଇବାରେ ଲାଗିଲା । କାଣ୍ଠିଆବଗ କୋକଶିଆଳିର ଚାଲାକି ଜାଣିପାରିଲା; କିନ୍ତୁ କିଛି କହିପାରିଲା ନାହିଁ । କ୍ଷୀରତକ ଚାଟିସାରି କୋକଶିଆଳି କହିଲା,

"କାହିଁ, ତୁମେ କିଛି ଖାଇଲ ନାହିଁ ! କ୍ଷୀର କଅଣ ଭଲ ଲାଗିଲା ନାହିଁ । ମୋତେ ତ ବେଶ୍ ମିଠା ଲାଗୁଛି !"

କାଣ୍ଡିଆବଗ ଭାବିଥିଲା, ବନ୍ଧୁ ଘରେ ପେଟପୂର ଅଚ୍ଛା ଭୋଜନ ମିଳିବ; କିନ୍ତୁ କୋକଶିଆଳ ଯେ ତାକୁ ଏପରି ଠକିବ ଓ ସେ ଭୋକ ଉପାସରେ ଘରକୁ ଫେରିବ, ଏକଥା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା । ମନଦୁଃଖରେ ସେ ଘରକୁ ଫେରିଗଲା ।

କିଛିଦିନ ପରେ କାଣ୍ଡିଆବଗ ଗୋଟିଏ ଭୋଜିର ଆୟୋଜନ କରି ତାର ବନ୍ଧୁମାନଙ୍କୁ ଖାଇବାକୁ ଡାକିଲା । କୋକଶିଆଳ ମଧ୍ୟ ନିମନ୍ତ୍ରିତ ହୋଇଥିଲା । ସେ ଖୁସି ହୋଇ କାଣ୍ଡିଆବଗ ଘରେ ପହଞ୍ଚିଲା । ଅନେକ ବେଳଯାଏ ମଜଲିସ ଚାଲିଲା । ତାହା-ପରେ ଖାଇବାପାଇଁ ବ୍ୟବସ୍ଥା ହେଲା । ସେ କୋକଶିଆଳକୁ କହିଲା, "ଆମେ ଦୁହେଁ ଏକାସାଙ୍ଗରେ ଖାଇବା ।"

କାଣ୍ଡିଆବଗ ଗୋଟିଏ ସୁରେଇରେ ମାଂସମିଶା ରଖିଦେଇ କୋକଶିଆଳକୁ କହିଲା, "ବନ୍ଧୁ, ଆସ ଖାଇବା ।" ସୁରେଇର ମୁହଁ ନଳପରି ସରୁ ହୋଇଥିବାରୁ କୋକଶିଆଳ ଆଦୌ ମାଂସ ଖାଇ-ପାରିଲା ନାହିଁ । ସେ କେବଳ ସୁରେଇର ବାହାର ଚାଟୁଥାଏ । ବେଳେବେଳେ ଖଣ୍ଡେ ମାଂସ କାଣ୍ଡିଆବଗର ଥଣ୍ଟରୁ ଖସି ପଡ଼ିଲେ ତାକୁ ଖାଉଥାଏ । ଏଣେ କାଣ୍ଡିଆବଗ ଥଣ୍ଟ ଗଳାଇ ସୁରେଇରୁ ଖଣ୍ଡକୁ ଖଣ୍ଡ ମାଂସ ଆଣି ଗିଳି ଦେଉଥାଏ । ଅଳ୍ପ ସମୟ ଭିତରେ ସେ ସବୁଯାକ ମାଂସ ଖାଇଦେଲା ।

କାଣ୍ଡିଆବଗ ପଚାରିଲା, "କାହିଁ, କିଛି ତ ଖାଇଲ ନାହିଁ ! ମାଂସଟା କଅଣ ଭଲ ରନ୍ଧା ହୋଇନାହିଁ ? ମୋତେ କିନ୍ତୁ ଖୁବ୍ ଭଲ ଲାଗିଲା ।"

କୋକଶିଆଳ କହିଲା, "ମୁଁ ଭାବିଥିଲି ଯେ ମୁଁ ଏକା ଶିଆଣା । ଏବେ ଦେଖୁଛି, ତୁମେ ମଧ୍ୟ ମୋଠାରୁ ଚାଲାଖ । ମୁଁ ଉପାସ ରହିଲି ବୋଲି ତୁମକୁ ଦୋଷ ଦେଉନାହିଁ । ମୁଁ ତୁମକୁ ଯେପରି ବ୍ୟବହାର କରିଥିଲି, ତାର ଉପଯୁକ୍ତ ପ୍ରତିଫଳ ପାଇଲି ।"

ଯେ କରେ ବେଭାର ଯେସନ
ତେସନ ଫଳ ପାଏ ଜାଣ ।

---

## ନିଜ ଉପରେ ନିର୍ଭର କର

ଗୋଟିଏ ସାରସୀ ଏକ ଗହମ କ୍ଷେତରେ ବସା କରି ଡିମ୍ବ ଦେଇଥିଲା । ଡିମ୍ବରୁ ଛୁଆ ବାହାରିବାରୁ ସେ ପ୍ରତିଦିନ ବାହାରୁ ଆହାର ଆଣି ସେମାନଙ୍କୁ ଖାଇବାକୁ ଦେଲା । କିଛିଦିନ ପରେ ଗହମ ପାଚି ଆସିଲା । ତହୁଁ ସାରସୀ ଭାବିଲା, "ଗହମ ପାଚି ଆସିଲାଣି । ଚାଷୀ ଗହମ କାଟିବାକୁ ଆସିବ । ତେଣୁ ଶୀଘ୍ର ଏଠାରୁ ଚାଲିଯିବା ଉଚିତ । କିନ୍ତୁ ଛୁଆଗୁଡ଼ିକ ଉଡ଼ି ଶିଖି ନାହାନ୍ତି । ଯେକୌଣସି ପ୍ରକାରେ ଆଉ କିଛିଦିନ କଟାଇବାକୁ ହେବ ।"

ସେଦିନ ସାରସୀ ଆହାର ପାଇଁ ବସା ଛାଡ଼ି ଯିବାପୂର୍ବରୁ ଛୁଆମାନଙ୍କୁ କହିଲା, "ଦେଖ, ଚାଷୀ କ୍ଷେତର ଅବସ୍ଥା ଦେଖିବାକୁ ଆସିବ । ସେ ଯାହା କହିବ, "ତୁମେମାନେ ମନ ଦେଇ ଶୁଣିବ । ମୁଁ ଆସିଲେ କହିବ । ତା'ହେଲେ ଫସଲ କଟାହେବା ଆଗରୁ ମୁଁ ତୁମମାନଙ୍କୁ ଏଠାରୁ ଅନ୍ୟ ଜାଗାକୁ ନେଇଯିବି ।"

ଦିନେ ପାରେଶୀ ଆହାର ଖୋଜି ଯାଇଥିଲାବେଳେ ଚାଷୀ ଆସି ଫସଲକୁ ଦେଖି କହିଲା, "ଏ ଗହମ ପାଚିଗଲାଣି । ଦିନେ ପଡ଼ୋଶୀ ଘରୁ କେତେଜଣ ଲୋକ ଆଣି କାଟି ନେବ ।"

ସନ୍ଧ୍ୟାବେଳେ ପାରେଶୀ ବସାକୁ ଆସିବାରୁ ଛୁଆମାନେ ଚାଷୀ ଯାହା କହିଥିଲା ତାହା ବର୍ଣ୍ଣନା କରି କହିଲେ, "ମାଆ, ଆମକୁ ଏଠାରୁ ନେଇଯାଅ ।" ପାରେଶୀ କହିଲା, "ତୁମର ଆଦୌ ଚିନ୍ତା କରିବା ଦରକାର ନାହିଁ । ଚାଷୀ ପଡ଼ୋଶୀ ଲୋକଙ୍କ ଉପରେ ନିର୍ଭର କରିଛି । ସେମାନେ ନିଜ ଫସଲ କାଟି ସାରିଲେ ଆସିବେ ତ ! ତେଣୁ ଏ କ୍ଷେତ କଟା ହେବାକୁ ବହୁତ ଡେରି ଅଛି ।"

କିଛିଦିନ ପରେ ଚାଷୀ ପୁଣି ଆସି କହିଲା, "ଗହମ ଏକ-ବାରେ ପାଚିଗଲାଣି । ପଡ଼ୋଶୀ ଲୋକଙ୍କୁ କହିଥିଲି; ସେମାନେ ଆଜିଯାଏ ଆସିଲେ ନାହିଁ । ସେମାନଙ୍କ ଉପରେ ଭରସା କରି ରହିଲେ ଗହମ ସବୁ ନଷ୍ଟ ହୋଇଯିବ । ଯାଏଁ, ଭାଇମାନଙ୍କୁ ଡାକିବି । ସେମାନେ ମୋର ଗହମ କାଟି ଦେବେ ।"

ସଞ୍ଜବେଳକୁ ପାରେଶୀ ବସାକୁ ଆସିଲାକ୍ଷଣି ଛୁଆମାନେ କହିଲେ, "ମାଆ, ଚାଷୀ ଆସି କହୁଥିଲା ଯେ ତାର ଭାଇମାନଙ୍କୁ ଡାକି ଫସଲ କାଟିବାକୁ ଆସିବ । ଚାଲ, ଆମେ ଅନ୍ୟ ଜାଗାକୁ ଚାଲିଯିବା ।"

ମାଆ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲା, "ବର୍ତ୍ତମାନ ଏତେ ଚିନ୍ତା କରିବାର କାରଣ ନାହିଁ । ଚାଷୀ ଭାଇମାନଙ୍କ ଉପରେ ଭରସା କରିଛି । ଭାଇମାନେ ନିଜ ନିଜ କାମରେ ବ୍ୟସ୍ତ । ନିଜ କାମ ନ ସାରିଲେ ସେମାନେ ଆସିବାର ଆଶା ନାହିଁ । ତେଣୁ ତୁମେମାନେ ନିର୍ଭୟରେ ରହିଥାଅ ।"

ଆଜି କେତେଦିନ ପରେ ଚାଷୀ ଆସି କହିଲା, "ଓହୋ ! ଗହମ ଝଡ଼ିବାକୁ ଆରମ୍ଭ କଲାଣି । ଭାଇମାନଙ୍କୁ ଚାହିଁ ଚାହିଁ ଏଣେ ଫସଲ ନଷ୍ଟ ହେବାକୁ ବସିଲାଣି । ଆଜି ସେମାନଙ୍କ ମୁହଁକୁ ଚାହିଁ ବସିଲେ ଲାଭ କଅଣ ? କାଲି ସକାଳୁ ଆସି ନିଜେ କାଟିବି । ଅନ୍ୟ ଉପରେ ନିର୍ଭର କରି ରହିଲେ ଗହମତକ ନଷ୍ଟ ହୋଇଯିବ । ପର ଉପରେ ଭରସା ରଖି ମୋର କ୍ଷତି ହେଉଛି ।"

ସେଦିନ ସନ୍ଧ୍ୟାବେଳେ ମାଆ ବସାକୁ ଆସିବାରୁ ଛୁଆମାନେ କହିଲେ, "ଆଜି ଚାଷୀ ଆସି କହୁଥିଲା—ଆଉ ପର ଉପରେ ନିର୍ଭର ନକରି କାଲି ସକାଳୁ ନିଜେ ଗହମ କାଟିବ । ଆମେ କଅଣ କରିବା ?" ମାଆ କହିଲା, "ହଁ, ଏବେ ଏ ବସା ଛାଡ଼ି ଚାଲିଯିବା ଦରକାର । ଚାଷୀ ଏବେ ବୁଝିଲାଣି ଯେ ପର ଉପରେ ନିର୍ଭର କଲେ କାମ ହୁଏ ନାହିଁ । ସେ କାଲି ସକାଳୁ ଆସି ଗହମ କାଟିବ । ଆମେ ଆଜି ରାତିରୁ ଏ ବସା ଛାଡ଼ି ଚାଲିଯିବା ।"

ଭୋର ନ ହେଉଣୁ ଘାରଚଢ଼ୀ ଛୁଆମାନଙ୍କୁ ନେଇ ସେ କିଆରୀରୁ ଦୂରକୁ ଚାଲିଗଲା ।

ଆପଣା ପାଦେ ଛିଡ଼ା ହେଲେ
ଅବଶ୍ୟ କର୍ମେ ଫଳ ମିଳେ ।

---

# ଅର୍ଥ ଅନର୍ଥର ମୂଳ

କୌଣସି ଗ୍ରାମରେ ଜଣେ ବଡ଼ ଧନୀଲୋକ ଥିଲେ । ତାଙ୍କର ବହୁତ ଜମିବାଡ଼ି । ନାନାପ୍ରକାର ଆମଦାନି ହୁଏ । ଜମିରେ କାମ କରିବାପାଇଁ ଅନେକ ଚାକର ଓ ମୂଲିଆ ଥାଆନ୍ତି । ନିଜ ଘର

ଖରଚକୁ ଫସଲରୁ କିଛି ରଖି ସେ ବାକିତକ ବିକ୍ରି କରନ୍ତି । ତାଙ୍କ ବାଡ଼ିର ପରିବା ପ୍ରତି ହାଟପାଳିରେ ବିକ୍ରି ହୁଏ । ଏଥିରୁ ଅନେକ ଟଙ୍କା ଆୟ ହୁଏ ।

ସେ ଗରିବ ଲୋକଙ୍କୁ ଟଙ୍କା କରଜ ଦେଇ ମହାଜନି ବ୍ୟବସାୟ ମଧ୍ୟ କରନ୍ତି । ପ୍ରତିଦିନ ଲୋକେ କରଜ ନେବାକୁ ବା କରଜ ସୁଝିବାକୁ ତାଙ୍କ ଦୁଆରକୁ ଆସନ୍ତି । ସେ ଏକୁଟିଆ ଲୋକ । ଏସବୁ ବୁଝିବାପାଇଁ କେତେଜଣ ଗୁମାସ୍ତା ଥାନ୍ତି । ଟଙ୍କା ପଇସାର ହିସାବ ସେମାନେ ରଖନ୍ତି । କିନ୍ତୁ ନିଜେ ନ ବୁଝିଲେ ଗୁମାସ୍ତାମାନେ ଠକି ନେବେ । ସେଥିପାଇଁ ସେ ପ୍ରାୟ ସବୁବେଳେ କାର୍ଯ୍ୟବ୍ୟସ୍ତ ଥାଆନ୍ତି । ସାଙ୍ଗ-ସୁଖଙ୍କ ସାଥିରେ ଗଳ୍ପ କରିବା, ଖେଳିବା ବୁଲିବା ପାଇଁ ତାଙ୍କୁ ବେଳ ମିଳେ ନାହିଁ । କେତେବେଳେ କଅଣ କରିବାକୁ ହେବ, ଏହି ଚିନ୍ତା ତାଙ୍କୁ ସବୁବେଳେ ଘାରିଥାଏ । ଏତେ ଧନ ଥିଲେ ହେଁ ସେ କେବେହେଲେ ଶାନ୍ତିରେ ନଥାନ୍ତି । ଏପରିକି ଚିନ୍ତାରେ ତାଙ୍କୁ ରାତିରେ ଭଲ ନିଦ ହୁଏ ନାହିଁ ।

ତାଙ୍କ ଘର ପାଖରେ ଗୋଟିଏ ମୋଚି ରହୁଥାଏ । ଜୋତା ତିଆରି କରିବା ଓ ପୁରୁଣା ଜୋତା ମରାମତି କରିବା ତାର କାମ । ଦାଣ୍ଡ ଦୁଆରେ ବସି ସେ କାମ କରିବା ସଙ୍ଗେ ଗୀତ ବୋଲୁଥାଏ । ହାତରେ କିଛି କାମ ନଥିଲେ ସାଙ୍ଗସାଥିଙ୍କ ସହିତ ଗଳ୍ପ କରେ । ତାର ମୁହଁଟି ସବୁବେଳେ ହସହସ; ମନରେ କେତେବେଳେ ହେଲେ ଚିନ୍ତା ନଥାଏ ।

ମୋଚିର ସୁଖଶାନ୍ତି ଦେଖି ଧନୀ ଲୋକଙ୍କର ହିଂସା ହେଲା । ଯାହାର ମନରେ ସବୁବେଳେ ଦୁଃଖ, ଅଶାନ୍ତି ସେ ଅନ୍ୟ ଲୋକର ସୁଖଶାନ୍ତି ସହିବ କିପରି ? ସେ ଯାଇ ମୋଚିକୁ ପଚାରିଲେ, "ଭାଇ, ବର୍ଷକୁ କେତେ ଅର୍ଜୁଛ ?"

ମୋଚି ଉତ୍ତରକଲା, "ମୁଁ ତାର କଅଣ ହିସାବ ରଖିଛି ? ରୋଜ୍ ଯାହା କମାଏ, ସେଦିନ ସେତକ ଖରଚ କରିଦିଏ । ତେବେ ମୋର ଅଭାବ ନଥାଏ; ଯେତିକ ମିଳେ ସେତିକରେ ମୁଁ ସନ୍ତୁଷ୍ଟ । ବର୍ଷକରେ ମୁଁ ପ୍ରାପ୍ୟ ତିନଶ ଟଙ୍କା ଅର୍ଜୁଥିବ ।"

ଏହାର ପରଦିନ ଧନୀ ଲୋକଟି ମୋଚିକୁ ଗୋଟିଏ ଥଳୀ ଦେଇ କହିଲେ, "ମୁଁ ତୁମକୁ କିଛି ସାହାଯ୍ୟ କରିବା ପାଇଁ ଏତକ ଦେଉଛି ।" ମୋଚି ଧନ୍ୟବାଦ ଦେଇ ଥଳୀଟି ନେଇ ଘରଭିତରେ ଫିଟାଇ ଦେଖିଲା, ସେଥିରେ ହଜାରେ ଟଙ୍କା ଅଛି । ସେ ଆଶ୍ଚର୍ଯ୍ୟ ହୋଇଗଲା ।

ମୋଚିର ଆନନ୍ଦ କହିଲେ ନସରେ । ତା ଜୀବନରେ ସେ ଏତେ ଟଙ୍କା କେବେ ଦେଖି ନଥିଲା । ଏ ଟଙ୍କାରେ ସେ କଅଣ କିଣିବ ଭାବି ଭାବି ରାତିସାରା ତାକୁ ନିଦ ହେଲାନାହିଁ । ଦିନରେ କାମ କରିବାକୁ ବସିଲା; କିନ୍ତୁ ତାର ମନରେ ଚିନ୍ତା, କାଳେ ଚୋରମାନେ ଜାଣିପାରି ତାର ଟଙ୍କା ଚୋରାଇ ନେବେ । ଏତେ-ଗୁଡ଼ାଏ ଟଙ୍କା କେଉଁଠି ଲୁଚାଇ ରଖିବ, ତାହା ସ୍ଥିରକରି ନପାରି ସେ ଚିନ୍ତିତ ହେଲା । ଏହି ଟଙ୍କା ଚିନ୍ତାରେ ତାର ମନରେ ଟିକିଏ ହେଲେ ଶାନ୍ତି ରହିଲା ନାହିଁ । ତା ତୁଣ୍ଡରୁ ଆଉ ଗୀତ ଶୁଣାଗଲା ନାହିଁ । ସେ ମୁହଁ ଶୁଖାଇ ରହିଲା । ସାଙ୍ଗସାଥିମାନଙ୍କୁ ଦେଖିଲେ ଏଣିକି ତାକୁ ବିରକ୍ତ ଲାଗିଲା । ମୋଚି ଉପରେ ତାର ସୁଖଶାନ୍ତି ଉଭେଇ ଗଲା ।

ସନ୍ତୋଷ ଅଟେ ମହାଧନ
ଅର୍ଥ ହିଁ ଅନର୍ଥ କାରଣ ।

# କାଠୁରିଆ ଓ ଜଳଦେବତା

ଗୋଟିଏ ଗାଆଁରେ ଜଣେ କାଠୁରିଆ ଥିଲା । ଲୋକଟି ବଡ଼ ଗରିବ ମାତ୍ର ସେ କେବେ ମିଛ କହୁ ନ ଥିଲା କି କାହାକୁ ଠକୁ ନ ଥିଲା । ସେ ପ୍ରତିଦିନ ପଖାଳ ଖାଇ ବଣକୁ ଯାଇ କଟୁ କାଠ ହାଣୁଥିଲା । ସଞ୍ଜବେଳେ ତାହାକୁ ବଜାରରେ ବିକି ଯାହା ପାଉଥିଲା ସେଥିରେ କଷ୍ଟରେ କୁଟୁମ୍ବ ଚଳାଉଥିଲା ।

ଦିନେ ସେ ବଣକୁ କାଠ ହାଣିବାକୁ ଯାଇଥିଲା । ନଦୀକୂଳରେ ଗୋଟାଏ ଶୁଖିଲା ଗଛ ହାଣୁ ହାଣୁ ତା ହାତରୁ କୁରାଢ଼ିଟି ଖସିଯାଇ ନଦୀରେ ପଡ଼ିଗଲା । ନଦୀ ଖୁବ୍ ଗଭୀର ଓ ସୁଅ ଟାଣ । କୁରାଢ଼ିଟି ଆଣିବାର ଉପାୟ ନ ଦେଖି ସେ ନଦୀକୂଳରେ ବସି କାନ୍ଦିବାକୁ ଲାଗିଲା । ଆଉ ଗୋଟିଏ କୁରାଢ଼ି କିଣିବାକୁ ସେ କାହୁଁ ପଇସା ପାଇବ ?

ଏହି ସମୟରେ ଜଳଦେବତା ନଦୀରୁ ବାହାରି ଆସି ତାକୁ କାନ୍ଦିବାର କାରଣ ପଚାରିଲେ । କାଠୁରିଆ କହିଲା, "ମୋ କୁରାଢ଼ିଟି ନଦୀରେ ପଡ଼ିଗଲା । ଆଉ ଗୋଟିଏ କୁରାଢ଼ି କିଣିବାକୁ ବଳ ନାହିଁ । କଅଣ କରିବ ?"

ଜଳ ଦେବତା ପାଣିରେ ବୁଡ଼ିଗଲେ ଓ ଗୋଟିଏ ସୁନାର କୁରାଢ଼ି ଧରି ଆସି ତାକୁ ପଚାରିଲେ, "ଏଇଟି ତୁମର କୁରାଢ଼ି ?"

କାଠୁରିଆ କହିଲା, "ନା, ଏଇଟି ସୁନାରେ ତିଆରି; ଏହା ମୋର ନୁହେଁ ।"

ତହୁଁ ଜଳଦେବତା ନଈରୁ ଗୋଟିଏ ରୁପାର କୁର୍‌ହାଡ଼ ଆଣି ପଚାରିଲେ, "ଦେଖ, ଏଇଟା ତୁମର କି ନା ?"

ଏଥର ମଧ୍ୟ କାଠୁରିଆ କହିଲା, "ନାଁ, ଏହା ମୋର ନୁହେଁ ।"

ଜଳଦେବତା ପୁଣି ଥରେ ନଈରେ ବୁଡ଼ି ଲୁହା କୁର୍‌ହାଡ଼ଟି ଦେଖାଇ ପଚାରିଲେ, "ଏଇଟି କଅଣ ତୁମ କୁର୍‌ହାଡ଼ ?"

କାଠୁରିଆ କୁର୍‌ହାଡ଼ଟି ଭଲ କରି ଦେଖି କହିଲା, "ହଁ, ଏଇଟି ମୋର । ଦୟାକରି ମୋତେ ମୋ କୁର୍‌ହାଡ଼ଟି ଦେଲେ ମୋ କୁଟୁମ୍ବ ବଞ୍ଚିବେ ।"

ଜଳଦେବତା ତାକୁ ଲୁହାର କୁର୍‌ହାଡ଼ ସଙ୍ଗେ ସୁନା ଓ ରୁପାର କୁର୍‌ହାଡ଼ ଦୁଇଟି ମଧ୍ୟ ଦେଇ କହିଲେ, "ତୁମେ ସତ୍ୟବାଦୀ, ତୁମର ଲୋଭ ନାହିଁ । ତେଣୁ ମୁଁ ତୁମକୁ ଏ ସୁନା ଓ ରୁପାର କୁର୍‌ହାଡ଼ ପୁରସ୍କାର ଦେଉଛି; ନିଅ ।"

କାଠୁରିଆ ଆନନ୍ଦରେ ଘରକୁ ଫେରିଗଲା । ତାର ଜଣେ ପଡ଼ୋଶୀ ଏକଥା ଶୁଣିପାରି ସେହିପରି ସୁନା ଓ ରୁପା କୁର୍‌ହାଡ଼ ପାଇବାକୁ ଲୋଭ କଲା । ସେ ସେହି ନଦୀକୂଳକୁ ଯାଇ ଗଛରେ ଦୁଇ ତିନି ଚୋଟ ହାଣି କୁର୍‌ହାଡ଼ଟିକୁ ଜାଣିଶୁଣି ନଈ ଭିତରକୁ ପକାଇଦେଲା ଓ ନଈକୂଳରେ ବସି କାନ୍ଦିଲା ।

ପୂର୍ବପରି ଜଳଦେବତା ଆସି ତାକୁ କାନ୍ଦିବାର କାରଣ ପଚାରିଲେ । ସେ କହିଲା ଯେ ତାର କୁର୍‌ହାଡ଼ଟି ପାଣିରେ ଖସି ପଡ଼ିଛି ।

ଜଳଦେବତା ନଈରୁ ଗୋଟିଏ ସୁନାର କୁର୍‌ହାଡ଼ ଆଣି ତାକୁ ପଚାରିଲେ, "ଏଇଟି ତୁମର କି ?"

ସୁନାର କୁର୍‌ହାଡ଼ ଦେଖିଲାକ୍ଷଣି ଲୋକଟି ଲୋଭରେ ପଡ଼ି କହିଲା, "ହଁ, ହଁ, ଏଇଟି ହେଉଛି ମୋର ।"

ଜଳ ଦେବତା କହିଲେ, "ତୁମେ ଲୋଭୀ ଓ ମିଥ୍ୟାବାଦୀ । ତୁମେ ସୁନା କୁରହାଡ଼ି ପାଇବାର ଯୋଗ୍ୟ ନୁହ । ଏପରିକି ତୁମର ଲୁହା କୁରହାଡ଼ିଟି ମଧ୍ୟ ତୁମକୁ ଦେବି ନାହିଁ ।"

ଏହା କହି ଜଳଦେବତା ସୁନା କୁରହାଡ଼ି ସହିତ ନଈ ଭିତରେ ଅନ୍ତର୍ଦ୍ଧାନ ହୋଇଗଲେ ।

ନର୍ଲୋଭ ସତ୍ୟବାଦୀ ନର
ଲଭଇ ଭବେ ପୁରସ୍କାର ।
ଯେ ମିଥ୍ୟା ଲୋଭ ଆଶ୍ରେ କରେ
ଦଣ୍ଡ ସେ ଲଭଇ ସଂସାରେ ।

---

## କୁକ୍‌କୁଡ଼ା ଓ ବିଲୁଆ

ଗୋଟିଏ କୁକ୍‌କୁର ଓ ଗୋଟିଏ କୁକ୍‌କୁଡ଼ା ମଧ୍ୟରେ ଖୁବ୍ ବନ୍ଧୁତା ଥିଲା । ଦିନେ ଦୁଇ ବନ୍ଧୁ ବୁଲି ବାହାରିଲେ । ଦୁହେଁ ଗପ କରି ଯାଉଯାଉ ଗୋଟିଏ ବଣରେ ପଡ଼ଞ୍ଚିଲେ । ସେତେବେଳକୁ ସଞ୍ଜ ହୋଇ ଯାଇଥିଲା । କୁକ୍‌କୁଡ଼ା କହିଲା, "ଗପ କରୁକରୁ ସଞ୍ଜ ହୋଇଗଲା । ଘରକୁ ଅନ୍ଧାରରେ ଫେରିପାରିବା ନାହିଁ । ଏବେ ଏଠାରେ କିପରି ରାତି କଟାଇବା ?"

କୁକ୍‌କୁର ଉତ୍ତର କଲା, "ତୁମେ ଏପରି ଭୟ କରିବାର କିଛି କାରଣ ନାହିଁ । ଏଇ ଗଛର ଗୋଟାଏ ଉଚ୍ଚ ଡାଳରେ ବସି ରାତିଟି କଟାଇ ଦିଅ । ଗଛମୂଳରେ ଗୋଟାଏ କୋରଡ଼ ଅଛି । ମୁଁ

ଛାଣ ଭିତରେ ରହିଯିବ। ସକାଳ ହେଲେ ପୁଣି ଦୁହେଁ ସାଙ୍ଗ ହୋଇ ଫେରିଯିବା।”

କଥାଟା କୁକ୍‌କୁଡ଼ାର ମନକୁ ପାଇଲା। ସେ ଉଡ଼ିଯାଇ ଗଛର ଗୋଟାଏ ଡାଳରେ ବସିଲା। କୁକ୍‌କୁର ଗଛର କୋରଡ଼ ଭିତରେ ଶୋଇଲା। ସକାଳ ହେଲେ ରାବିବା କୁକ୍‌କୁଡ଼ାମାନଙ୍କର ପ୍ରକୃତି। ତେଣୁ ସକାଳ ଆଲୁଅ ଦେଖାଗଲାକ୍ଷଣି କୁକ୍‌କୁଡ଼ା ଗଛଡାଳ ଉପରେ ଥାଇ ରାବିଲା, କକ୍‌ଡ଼ୁକ୍ଁ, କୁକ୍ଡ଼ୁକ୍ଁ। ବଣ ଭିତରେ ଏହି ରାବ ଶୁଣାଯିବାରୁ ଗୋଟିଏ କଲୁଆ ଖୁସି ହୋଇ କହିଲେ, “ଆଜି ମୋର ଭାଗ୍ୟ ଭଲ। କାହୁଁ ଗୋଟାଏ କୁକ୍‌କୁଡ଼ା ଆସିଛି। ବହୁତ ଦିନ ହେଲା କୁକ୍‌କୁଡ଼ା ମାଂସ ପେଟରେ ପଡ଼ିନାହିଁ। ଆଜ ପେଟପୂରା କରି କୁକ୍‌କୁଡ଼ା ମାଂସ ଖାଇବି।”

ଏହା ବିଚାର କରି ସେ ଗଛମୂଳରେ ପହଞ୍ଚିଲା। କୁକ୍‌କୁଡ଼ାକୁ ଦେଖି ସେ ହସି ହସି କହିଲା, “ଭାଇ, ତୁମର ସ୍ୱରଟି କେଡ଼େ ମଧୁର। ଗୀତରେ ମୋର ଭାରି ଶ୍ରଦ୍ଧା। ତୁମ ଗୀତ ଶୁଣି ଦଉଡ଼ି ଆସିଲି। ମୁଁ ମଧ୍ୟ ଟିକିଏ ଗାଇ ଜାଣେ। ତୁମେ ଗଛରୁ ଓହ୍ଲାଇ ଆସ। କିଛି ସମୟ ଗୀତଗାଇ ମନ ଖୁସି କରିବା।”

କୁକ୍‌କୁଡ଼ା ଭାରି ଚାଲାଖ। ସେ କଲୁଆର ପ୍ରକୃତ ଉଦ୍ଦେଶ୍ୟ ବୁଝିପାରିଲା। କିନ୍ତୁ ସେ ମନକଥା ମନରେ ରଖି ହସି ହସି କହିଲା, “ହଁ ଭାଇ, ତୁମ ପ୍ରସ୍ତାବ ଶୁଣି ବଡ଼ ଖୁସି ହେଲି। ଏଡ଼େ ସୁନ୍ଦର ସକାଳରେ ଗୀତ ଗାଇବାକୁ ମନ ହେବାର କଥା। ତେବେ ମୋର ଗୋଟିଏ ବନ୍ଧୁ ଗଛ କୋରଡ଼ରେ ଶୋଇଛନ୍ତି। ସେ ଭଲ ବାଦ୍ୟ ବଜାଇ ଜାଣନ୍ତି। ତାଙ୍କୁ ଡାକି ଉଠାଅ। ସେ ବାଜା ବଜାଇବେ। ଆମେ ଦୁହେଁ ମିଳି ଗୀତ ଗାଇବା। ଖୁବ୍ ମଜା ହେବ।”

ଏହା ଶୁଣି ବଲୁଆ ଭାରି ଖୁସି ହୋଇ ଗଛର କୋରଡ଼ ପାଖକୁ ଗଲା । ସେତେବେଳକୁ କୁକ୍କୁର ନିଦରୁ ଉଠି ସେ ଦୁହିଁଙ୍କର କଥାବାର୍ତ୍ତା ଶୁଣୁଥିଲା । ବଲୁଆକୁ ଦେଖିଲାକ୍ଷଣି କୁକ୍କୁର କୋରଡ଼ ଭିତରୁ ବାହାରି ପଡ଼ିଲା । ବଲୁଆ କୁଆଡ଼େ ପଳାଇବ ବାଟ ପାଇଲା ନାହିଁ । ମାତ୍ର କୁକ୍କୁର ବେଗରେ ଦଉଡ଼ି ଆସି ତାର ଗଳାକୁ କାମୁଡ଼ି ଧରିଲା । ଗଛ ଉପରେ ଥାଇ କୁକ୍କୁଡ଼ା କହିଲା, "ଆରେ ମୂର୍ଖ ବଲୁଆ, ତୁ ମୋତେ ମାରି ଖାଇବାକୁ ଆସିଥିଲୁ, ଏବେ ନିଜେ ମର । ତୋର ଏକା ବୁଦ୍ଧି ଅଛି ବୋଲି ମନେ କରିଥିଲୁ । ଆଉ କଣ କାହାର ବୁଦ୍ଧି ନାହିଁ ? ପରକୁ ଠକିବାର ଚେଷ୍ଟାକଲେ କି ଫଳ ମିଳେ ଏବେ ଦେଖ ।"

ପରକୁ କଲେ ପ୍ରତାରଣା
ନିଜର ହାନି ହୁଏ ସିନା ।

---

## ଅସନ୍ତୋଷର ଫଳ

ଗୋଟିଏ ବଣ ଭିତରେ ଏକ ପ୍ରକାଣ୍ଡ ଜଳାଶୟ ଥିଲା । ସେଥିରେ ଅନେକ ବେଙ୍ଗ ଥିଲେ । ସେମାନେ ଆନନ୍ଦରେ ଖାଇପିଇ ପୁଷ୍କରିଣୀର ଜଳରେ ଖେଳି ସମୟ କଟାଉଥିଲେ ।

ଦିନେ ସେମାନଙ୍କ ଭିତରୁ ଜଣେ କହିଲା, "ମୁଁ ଦେଖୁଛି, ସବୁ ଜୀବଙ୍କର ଗୋଟାଏ ଲେଖାଏଁ ରଜା ଅଛନ୍ତି । ସେ ତାଙ୍କ ଅଧୀନରେ ଥିବା ଜୀବଙ୍କର ହାନିଲାଭ ବୁଝୁଛନ୍ତି । କିନ୍ତୁ ଆମର

ରଜା ନାହିଁ । ଅନ୍ୟ ଜୀବମାନେ ଆମକୁ ହୀନ ମନେ କରୁଛନ୍ତି । ଆମେ କଅଣ ସେମାନଙ୍କଠାରୁ ବଳରେ ନା ବୁଦ୍ଧିରେ ଊଣା ? ଆମର ଜଣେ ରଜା ହେଲେ ଆଉ ଚିନ୍ତା ରହିବ ନାହିଁ । ସେ ଆମର ଦୁଃଖସୁଖ ବୁଝିବେ । କେହି ଆମକୁ ଆଉ ଶ୍ରେଷ୍ଠ ବୋଲି ବିଚାରିବେ ନାହିଁ ।"

ବେଙ୍ଗମାନେ ସହଜେ ବୋକା । ଏଇକଥାରେ ସମସ୍ତେ ଭୁଲିଯାଇ କହିଲେ, "ହିଁ, ହିଁ, ଆମର ବି ଜଣେ ରଜା ରହିବା ଦରକାର । ଅନ୍ୟ ଜୀବଙ୍କଠାରୁ ଆମେ ଅପମାନ ସହିବା କାହିଁକି ?"

ଏହାପରେ ବିଚାର ପଡ଼ିଲା, 'କାହାକୁ ଆମର ରଜା କରିବା ?' ଆପଣା ଆପଣା ଭିତରେ ଅନେକ ବେଳଯାଏ ଆଲୋଚନା ହେଲେ ହେଁ କିଛି ସ୍ଥିର ହୋଇପାରିଲା ନାହିଁ । ଶେଷରେ ଗୋଟିଏ ବୁଢ଼ିଆ ବେଙ୍ଗ କାହାଁପେଡ଼ି କହିଲା, "କାହାକୁ ରଜା କରିବା, ସେକଥା ଆମେ ସ୍ଥିର କରିପାରିବା ନାହିଁ । ବ୍ରହ୍ମା ହେଉଛନ୍ତି ଦେବତାମାନଙ୍କରେ ଶ୍ରେଷ୍ଠ । କେତେଜଣ ଯାଇ ବ୍ରହ୍ମାଙ୍କୁ କହିଲେ ସେ ଆମପାଇଁ ଜଣେ ରଜା ପଠାଇ ଦେବେ ।"

ଏହା ସ୍ଥିର ହେବାରୁ କେତେଗୁଡ଼ିଏ ବେଙ୍ଗ ଯାଇ ବ୍ରହ୍ମାଙ୍କୁ କହିଲେ, "ସବୁ ଜୀବଙ୍କର ଜଣେ ଜଣେ ରଜା ଅଛନ୍ତି । କିନ୍ତୁ ଆମର କେହି ରଜା ନଥିବାରୁ ଆମକୁ ଅପମାନ ହେଉଅଛି । ଆପଣ ଦୟାକରି ଆମକୁ ଗୋଟିଏ ରଜା ଦିଅନ୍ତୁ ।"

ବ୍ରହ୍ମା ବେଙ୍ଗମାନଙ୍କର ନିର୍ବୋଧତା ବୁଝିପାରିଲେ । କିନ୍ତୁ ବେଙ୍ଗମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଗୋଟିଏ କାଠଗଡ଼ି ପୋଖରୀକି ଫିଙ୍ଗିଦେଇ କହିଲେ, "ଏଇ ତୁମର ରଜା ହେବେ ।"

ବେଙ୍ଗମାନେ ପୋଖରୀକୁ ଫେରି ଆସିଲେ ।

କାଠଗଡ଼ ଖଣ୍ଡିକ ପାଣିରେ ପଡ଼ିଲାବେଳେ ପ୍ରକାଣ୍ଡ ଶବ୍ଦ ହେଲା, ଲହଶ ଉଠି କୂଳରେ ପିଟି ହୋଇଗଲା । ଏହା ଦେଖି ବେଙ୍ଗମାନେ ପ୍ରଥମେ ବଡ଼ ଭୟ କଲେ । ସେମାନେ ଗାତରେ ଲୁଚି ରହିଲେ । କାଠଗଡ଼ ପାଖକୁ ଆସିବାକୁ କାହାରି ସାହସ ହେଲା ନାହିଁ ।

ଏହାପରେ କେତୁଦିନ ଗଲା । ଥରେ ଗୋଟିଏ ବେଙ୍ଗ ଖୁବ୍ ସାହସ କରି ନୂଆ ରଜାଙ୍କୁ ଦେଖିବ ବୋଲି ପାଖକୁ ଆସିଲା । କାଠଗଡ଼ ତାର କିଛି ଅନିଷ୍ଟ କରୁ ନଥିବାର ଦେଖି ତାର ସାହସ ବଢ଼ିଗଲା । ସେ ଏହାର ଚାରିପାଖେ ବୁଲି ପହଁରି ଏହାକୁ ଦେଖିଲା । ଶେଷରେ ସେ ଡେଇଁପଡ଼ି ତା ଉପରେ ବସିଲା । ତଥାପି କାଠଗଡ଼ ତାକୁ କିଛି କହିଲା ନାହିଁ । ତାର ଭୟ ଏକବାରେ ଭାଙ୍ଗିଗଲା ।

ସେ ଫେରିଯାଇ ଅନ୍ୟମାନଙ୍କୁ କହିଲା ଯେ ଏ ରଜାଙ୍କୁ ଭୟ କରିବାର କିଛି କାରଣ ନାହିଁ । ସେମାନେ ତାହା କଥାରେ ବିଶ୍ୱାସ କରି କାଠଗଡ଼ ପାଖକୁ ଆସିଲେ; ତା ଉପରେ ବସି ଡେଇଁଲେ । ତଥାପି କାଠଗଡ଼ ସେମାନଙ୍କୁ କିଛି କହିଲା ନାହିଁ । ତହୁଁ ସେମାନେ ସ୍ଥିର କଲେ ଯେ ଏ ରଜାଙ୍କର କିଛି ବଳ ନାହିଁ । ଏପରି ରଜା ଥିବା ଯାହା, ନଥିବା ମଧ୍ୟ ସେଇଆ ।

ତତ୍ପରେ ବେଙ୍ଗମାନେ ବ୍ରହ୍ମାଙ୍କ ପାଖକୁ ଯାଇ କହିଲେ, "ଆପଣ ଆମକୁ ଜଣେ ରଜା ଦେଲେ ସତ; କିନ୍ତୁ ଏହାଙ୍କ ଦ୍ୱାରା କାମ ଚଳିବ ନାହିଁ । ଖାଲି ପୋଖରୀରେ ପଡ଼ିରହିଛନ୍ତି । କାହାକୁ କିଛି କହୁନାହାନ୍ତି । ଏପରିକି ଆମେମାନେ ତାଙ୍କ ଉପରେ ଡିଆଁ-ଡେଇଁ କଲେ ସୁଦ୍ଧା କିଛି କରୁନାହାନ୍ତି । ଆମକୁ ରଜାଭଳି ଜଣେ

ରାଜା ହଅନ୍ତୁ; ଯିଏ ହାକମି କରି ପାରିବ, ଯାହାକୁ ସମସ୍ତେ ଭୟ କରିବେ ।"

ବ୍ରହ୍ମା ବେଙ୍ଗମାନଙ୍କର ବୋକାମି ବୁଝିପାରି କହିଲେ, "ଆଚ୍ଛା, ମୁଁ ଅଉ ଗୋଟିଏ ରାଜା ଦେଉଛି । ଏ ରାଜା ଖୁବ୍ ବଳୁଆ ଓ ତୁମମାନଙ୍କ ଉପରେ ହାକମି କରିପାରିବ ।" ଏହା କହି ସେ ଗୋଟିଏ ବଗକୁ ବେଙ୍ଗମାନଙ୍କର ରାଜା କରି ପଠାଇଦେଲେ ।

ବଗ ପୋଖରୀପାକ ବୁଲି ବେଙ୍ଗମାନଙ୍କୁ ଗୋଟି ଗୋଟି ଧରି ଖାଇବାକୁ ଲାଗିଲା । ଜୀବନ ବିକଳରେ ସେମାନେ ଗାତ ଖୋଳି ଲୁଚିଲେ । କିନ୍ତୁ ବଗ ସେମାନଙ୍କୁ ଥଣ୍ଟରେ ଗାତରୁ ଟାଣି ଆଣି ଖାଇବାକୁ ଲାଗିଲା । ଉପରେ ଗୋଟିଏ ହେଲେ ବେଙ୍ଗ ପାଣିରେ ପହଁରିବାକୁ ସାହସ କଲା ନାହିଁ ।

ଶେଷରେ ବେଙ୍ଗକୁଳ ଧ୍ୱଂସ ହେବାର ଦେଖି ସେମାନେ ପୁଣି ବ୍ରହ୍ମାଙ୍କ ପାଖକୁ ଯାଇ କହିଲେ, "ଆପଣ ଏ ରାଜାଙ୍କୁ ଫେରାଇ ନେଇ ଆସନ୍ତୁ । ଆମ କୁଳ ବୁଡ଼ିବା ଉପରେ ।"

ବ୍ରହ୍ମା ଉତ୍ତରକଲେ, "ମୁଁ ତାକୁ ଫେରାଇ ଆଣି ନପାରେ । କେହି ରାଜା ନଥିବାରୁ ତୁମେ ଅସନ୍ତୁଷ୍ଟ ଥିଲ । ମୁଁ ତୁମମାନଙ୍କୁ ଗୋଟିଏ ରାଜା ଦେଲି, ତାର କିଛି ବଳ ନାହିଁ ବୋଲି ତୁମେମାନେ ପୁଣି ଅସନ୍ତୁଷ୍ଟ ହେଲ । ତେଣୁ ମୁଁ ଗୋଟିଏ ବଳୁଆ ରାଜା ଦେଲି । ଏବେ ତାକୁ ଫେରାଇ ନେବାକୁ କହୁଛ । ମୁଁ ତାହା କରିପାରିବି ନାହିଁ । ତୁମମାନଙ୍କ ବୋକାମିର ଫଳ ତୁମମାନଙ୍କୁ ହିଁ ଭୋଗିବାକୁ ହେବ । ନିଜ ଭାଗ୍ୟରେ ସନ୍ତୁଷ୍ଟ ରହିଥିଲେ ତୁମମାନଙ୍କର ଏପରି ଦୁଃଖ ହୋଇ ନଥାନ୍ତା ।"

ବେଙ୍ଗମାନେ ହତାଶ ହୋଇ ଫେରି ଆସିଲେ ।

ଯହିଁ ସନ୍ତୋଷ ତହିଁ ସୁଖ,
ଅସନ୍ତୋଷରେ ଘୋର ଦୁଃଖ ।

---

## ସଭିଙ୍କ କଥା ରଖିବା କଠିନ

ଜଣେ ଧୋବା ତୁଠକୁ ଲୁଗା ନେବାଆଣିବା ପାଇଁ ଗୋଟିଏ ଗଧ କିଣିବା ସକାଶେ ସାଥିରେ ପୁଅକୁ ନେଇ ହାଟକୁ ଗଲା ।

ହାଟରେ ଗୋଟିଏ ଭଲ ଗଧ କିଣି ବାପପୁଅ ତାକୁ ଘେନି ଘରକୁ ଫେରିଲେ । ବାପ ଗଧ ବେକର ଦଉଡ଼ି ଧରିଥାଏ, ପୁଅ ପଛରୁ ଅଡ଼ାଉଥାଏ । ଭଲ ଗଧଟିଏ ମିଳିଥିବାରୁ ଦୁହିଁଙ୍କର ମନ ଖୁସି ।

କିଛିଦୂର ଆସିବା ପରେ ଗାଆଁଟିଏ ପଡ଼ିଲା । ଗାଆଁ ଦାଣ୍ଡରେ କେତେଗୁଡ଼ିଏ ପିଲା ଖେଳୁଥିଲେ । ସେମାନେ ବାପପୁଅଙ୍କୁ ଦେଖି କହିଲେ, "ତୁମେ ଦୁହେଁ ବଡ଼ ଓଲୁ । ଗଧଟାଏ ନେଇଛ । ଗଧ ଚାଲିଛି, ତା ସାଥିରେ ଦୁହେଁଯାକ ଧୂଳିଧୂସର ହୋଇ ଚାଲିଛ । କେହି ଜଣେ ଗଧ ଉପରେ ବସିଗଲେ ହୁଅନ୍ତା ନାହିଁ ?"

ଏହା ଶୁଣି ବାପ କହିଲା, "ସତ କଥା । ଗଧଟା ଥାଉଁ ଥାଉଁ ଦୁହେଁଯାକ ଚାଲି ଚାଲି ଯିବା କାହିଁକି ? ପୁଅ, ତୁ ଗଧ ଉପରେ ବସ । ମୁଁ ଚାଲୁଛି ।"

ପୁଅ ଗଧ ଉପରେ ବସିଗଲା । ବାପ ତା ପଛେ ପଛେ ଗ୍ଲଲା ।

କଛୁଦୂର ଯିବାପରେ ବାଟରେ ଗୋଟିଏ ବୁଢ଼ୀ ଏମାନଙ୍କୁ ଦେଖି କହିଲା, "ଓଃ, କ କଳିକାଳ ହେଲା ? ଦେଖୁନ, ଭେଣ୍ଡା ଟୋକାଟା ଗଧ ଉପରେ ବସି ନିଶ୍ଚିନ୍ତରେ ଯାଉଛି; ବୁଢ଼ାବାପ ତା ପଛେ ପଛେ ଚ୍ଲଲଛି । ବୁଢ଼ା ସିନା ଗଧରେ ବସିଗଲେ ତାକୁ ବାଧା ହୁଅନ୍ତା ନାହିଁ ! ପୁଅଟାର କଅଣ ବାପର ଭଲମନ୍ଦକୁ ନଜର ଅଛି ? ସେ ଖାଲ ନଜର ସୁଖ ଦେଖୁଛି ।"

ଏହା ଶୁଣି ପୁଅ ଗଧରୁ ଓହ୍ଲାଇପଡ଼ି କହିଲା, "ବାପା, ବୁଢ଼ୀ କଅଣ କହିଲା, ଶୁଣିଲ ? ପ୍ରକୃତରେ ମୋଠାରୁ ତୁମେ ଦୁର୍ବଳ । ତୁମେ ଗଧ ଉପରେ ବସ । ମୁଁ ଚ୍ଲଲ ଚ୍ଲଲ ଯାଉଛି ।"

ତହୁଁ ବାପ ଗଧ ଉପରେ ବସିଲା ଓ ପୁଅ ତାକୁ ଅଢ଼େଇ ଅଢ଼େଇ ପଛରେ ଚ୍ଲଲ୍ଲା । ଏହିପରି କଛୁଦୂର ଯିବାପରେ ସେମାନେ ଆଉ ଗୋଟିଏ ଗାଆଁରେ ପହଞ୍ଚିଲେ । ଗାଆଁ ଦାଣ୍ଡରେ କେତେଜଣ ଲୋକ ଏମାନଙ୍କୁ ଦେଖି କହିଲେ, "ଦେଖ, ଏ ଲୋକଟା କେଡେ ସ୍ୱାର୍ଥପର ! ନିଜେ ଗଧ ଉପରେ ବସି ନିଶ୍ଚିନ୍ତରେ ଯାଉଛି । ପିଲଟା ଯେ କ କଷ୍ଟରେ ଧାଇଁଛି ଟିକଏ ହେଲେ ଭାବୁନାହିଁ । ଏଥିରେ ପିଲଏ ବାପମାଆଙ୍କୁ ମାନିବେ କଆଁ ?"

ଏହା ଶୁଣି ବାପ ପୁଅକୁ ଡାକି କହିଲା, "ଏମାନେ ଯାହା କହୁନନ୍ତି, ଏକବାରେ ମିଛ ନୁହେଁ । ଚ୍ଲଲବାରେ ତୋତେ ନିଶ୍ଚୟ କଷ୍ଟ ହେଉଥିବ । ଆ, ମୋ ପଛକୁ ଲଗି ଗଧ ଉପରେ ବସିଯାଆ ।"

ଏହିପରି ବାପପୁଅ ଦୁହେଁଯାକ ଗଧ ଉପରେ ବସି ଯିବାକୁ ଲଗିଲେ ।

କଛୁଦୂର ଯିବାପରେ ସେମାନେ ଗୋଟିଏ ପୋଖରୀକୂଳେ ପହଞ୍ଚିଲେ । କେତେଗୁଡ଼ିଏ ଝିଅ ପାଣି ନେବାପାଇଁ ପୋଖରୀକୁ

ଆସିଥିଲେ । ସେମାନେ ଏ ଦୁହିଁଙ୍କୁ ଗଧ ଉପରେ ବସିଥିବାର ଦେଖି କହିଲେ, "ହଇହେ; ଏ ଗଧଟିକୁ କଅଣ ମାରିବ ? ତୁମେ ଦୁଇଜଣ ଲୋକ ଗଧ ଉପରେ ବସିଛ । ସେ ବିଚରା ଦୁଇଜଣଙ୍କର ବୋଝ ସହିପାରିବ କପରି ? ନିକଏ ହେଲେ ଭାବୁନାହିଁ । ବରଂ ତୁମେ ଦୁହେଁ ଗଧଟିକୁ ବୋହିନେଲେ ଭଲ ହୁଅନ୍ତା ।"

ଦୁହେଁଯାକ ଗଧ ଉପରୁ ଓହ୍ଲାଇ ବିଚାରକଲେ, "ଠିକ୍ କଥା, ଆମ ଦୁହିଁଙ୍କୁ ବୋହି ଆଣିବାରେ ଗଧକୁ ଭାରି ବାଧା ହୋଇଥିବ । ବାକି ବାଟତକ ଆମେ ତାକୁ ବୋହିନେବା ଠିକ୍ ହେବ ।"

ଏହିପରି ସ୍ଥିରକରି ବାପପୁଅ ଦୁଇଖଣ୍ଡ ଦଉଡ଼ିରେ ଗଧର ଆଗଗୋଡ଼ ଦୁଇଟିକୁ ଓ ପଛଗୋଡ଼ ଦୁଇଟିକୁ ବାନ୍ଧିଦେଲେ । ମଝିରେ ଗୋଟିଏ ବାଉଁଶ ପୂରାଇ ବାପପୁଅ ବାଉଁଶର ଦୁଇ ମୁଣ୍ଡକୁ କାନ୍ଧରେ ଉଠାଇ ଚାଲିଲେ । ବାଉଁଶରେ ଉପରମୁହାଁ ହୋଇ ଝୁଲିବାରୁ ଗଧକୁ ବଡ଼ ଖରାପ ଲାଗିଲା । ସେ ଛଟପଟ ହେଲା ।

ସେତେବେଳକୁ ସେମାନେ ଗୋଟାଏ ପୋଲ ଉପରେ ଯାଉଥିଲେ । ଲୋକେ ଦେଖିଲେ, ଦୁଇଜଣ ଲୋକ ଗୋଟାଏ ଜୀଅନ୍ତା ଗଧକୁ ବାନ୍ଧି ଭାରକରି ନେଉଛନ୍ତି । ସେମାନେ ଭାବିଲେ, ଏ ଲୋକ ଦୁଇଟା କଅଣ ପାଗଳ ! ଜୀଅନ୍ତା ଗଧକୁ ଏପରି କିଏ ନିଏ ? ସେମାନେ ହସି ହସି ଅଥୟ ହୋଇଗଲେ ।

ଏହି ସମୟରେ ଗଧ ଛଟିପିଟି ହେବାରୁ ତା ଗୋଡ଼ର ଦଉଡ଼ି ଛିଣ୍ଡିଗଲା ଓ ସେ ପୋଲ ତଳକୁ ଖସିପଡ଼ିଲା । ପୋଲତଳେ ପାଣି-ସୁଅ ଚାଲିଥିଲା । ସେଥିରେ ଗଧ ଭାସିଗଲା ।

ବାପପୁଅ ମୁଣ୍ଡରେ ହାତଦେଇ ବସିଗଲେ ।

ସଭିଙ୍କ ମନ ରଖି ଚଳିବା ନୁହଇ କଦାଚନ ।

# ସହରୀ ମୂଷା ଓ ଗାଉଁଲୀ ମୂଷା

ଗୋଟିଏ ସହରୀ ମୂଷା ଓ ଗୋଟିଏ ଗାଉଁଲି ମୂଷା ଭିତରେ ବନ୍ଧୁତା ଥିଲା । ଥରେ ସହରୀ ମୂଷା ମଫସଲ ବୁଲି ଦେଖିବା ପାଇଁ ଆସି ଗାଉଁଲିମୂଷା ଘରେ ପହଞ୍ଚିଲା । ଗାଉଁଲିମୂଷା ତାକୁ ଖୁବ୍ ଆଦର କରି ନିଜ ଘର ଭିତରକୁ ଡାକିନେଲା ।

ଗାଉଁଲି ମୂଷା ଧାନଖଳା ପାଖରେ ଗୋଟିଏ ଗାତ ଭିତରେ ରହୁଥିଲା । ଏହାକୁ ଦେଖି ସହରୀମୂଷା ଆଶ୍ଚର୍ଯ୍ୟ ହୋଇଗଲା । ସନ୍ଧି-ସନ୍ଧୁଆ ସଂକୀର୍ଣ୍ଣ ଜାଗା । ଗାତ ଭିତରେ ଚଳାଚଳ ହେବାକୁ ତାକୁ ଖରାପ ଲାଗିଲା । କିନ୍ତୁ ବାଧ୍ୟହୋଇ ସେ ବନ୍ଧୁ ସହିତ ସେହି ଗାତରେ ରହିଲା ।

ଖାଇବାବେଳକୁ ଗାଉଁଲିମୂଷା ବନ୍ଧୁ ପାଇଁ ମଟରଛୁଇଁ, ଗହମ, ଧାନ, ଟିକିଏ ଛେନା, ଖଣ୍ଡିଏ ମାଂସ ଓ କେତୋଟି ଫଳ ଆଣିଦେଲା । ଏହାକୁ ଦେଖି ସହରୀମୂଷା କିପରି କଅଣ ଖାଇବ ବୁଝିପାରିଲା ନାହିଁ । ରୁଟି ନାହିଁ, ମାଖନ ନାହିଁ, ଅଣ୍ଡାଭଜା ନାହିଁ; ମାଂସତରକାରି ନାହିଁ । ସହରରେ ସେ ଯାହାସବୁ ଖାଏ, ସେଥିରୁ କିଛି ହେଲେ ଦେଖି ପାରିଲା ନାହିଁ । ସେ ଖାଇବ କଅଣ ? ସେ ସବୁ କିଣିଦେରେ ଖାଲି ମୁହଁମାରି ରଖିଦେଲା ।

ବନ୍ଧୁ କିଛି ଖାଉ ନ ଥିବାରୁ ମଫସଲି ମୂଷା ମନଦୁଃଖରେ କହିଲା, "ଭାଇ, ତୁମେ କିଛି ଖାଉନାହଁ । କଥା କଅଣ ବୁଝିପାରୁ-ନାହିଁ ।" ସହରୀ ମୂଷା କହିଲା, "ତୁମକୁ ସତ କଥା କହିବାକୁ ବାଧ୍ୟ ହେଉଛି । କିଛି ମନେ କରିବ ନାହିଁ । ତୁମେ ଏଠାରେ ଗୋଟାଏ କଦର୍ଯ୍ୟ ଗାତ ଭିତରେ ରହୁଛ । ତୁମେ ଯାହା ଖାଉଛ, ସେଭଳି

ଜିନିଷ ଆମେ ସହରରେ ଛୁଇଁବୁ ନାହିଁ । ଥରେ ସହରକୁ ଯାଇ ଦେଖିଆସ, ଆମେ କିପରି ଘରେ ରହୁଛୁ । ତାହାହେଲେ ବୁଝିପାରିବ ତୁମେ କେଡ଼େ ଦୁଃଖରେ ଚଳୁଛ ! ସହରରେ ଏତେ ଜିନିଷ ଅଛି ଯେ ସେସବୁ ତୁମର ମଫସଲରେ ସ୍ୱପ୍ନ । ଚାଲ, ଆଜି ମୋ ସଙ୍ଗରେ ଯାଇ ଆମ ରହିବା, ଖାଇବାପିଇବା ଦେଖି ଆସିବ ।”

ମଫସଲି ମୂଷା ସହର ଦେଖିବାପାଇଁ ବନ୍ଧୁ ସାଙ୍ଗରେ ଗଲା । ସଞ୍ଜବେଳେ ଦୁହେଁଯାକ ଗୋଟାଏ ପ୍ରକାଣ୍ଡ ପକ୍କାଘରେ ପହଞ୍ଚିଲେ । ମେଜିଆରେ ମାର୍ବଲପଥର; କୌଣସିଠାରେ ଟିକିଏ ହେଲେ ମଇଳା ନାହିଁ । କାନ୍ଥ ସବୁ ଚକ୍‌ଚକ୍ । ସେଥିରେ ଛବିମାନ ଟଙ୍ଗା ହୋଇଛି । ଘର ଭିତରେ ଆଲମାରି, ଚୌକି, ଟେବୁଲ ପ୍ରଭୃତି ସଜାହୋଇଛି । ଏସବୁ ଦେଖି ମଫସଲି ମୂଷା କାବା ହୋଇ ପଚାରିଲା, “ଏଡ଼େ ବଡ଼ ଘରେ ତୁମେ ରହୁଛ କିପରି ?” ସହରି ମୂଷା କହିଲା, “ଏହିପରି ଅନେକ କୋଠରି ଅଛି । ଯେତେବେଳେ ଯେଉଁଠାରେ ସୁବିଧା, ସେତେବେଳେ ସେଠାରେ ରହେ । ସବୁଘର ଏହିଭଳି ସଫାସୁତୁରା । ଆମେ ଗାତରେ ରହୁନାହିଁ ।”

ସହରି ମୂଷା ବନ୍ଧୁକୁ ଅନ୍ୟ ଗୋଟାଏ ଘରକୁ ନେଇଗଲା । ଗୋଟାଏ ବଡ଼ ଟେବୁଲ ଉପରେ ନାନା ପ୍ରକାରର ଖାଇବା ଜିନିଷ ସଜା ହୋଇ ରହିଥିଲା । ଟେବୁଲ ଚାରିପାଖେ ଚଉକି । ଦୁଇବନ୍ଧୁ ଟେବୁଲ ଉପରକୁ ଉଠିଲେ । ସହରିମୂଷା କହିଲା, “ଏବେ ଖାଅ । ଏ ହେଉଛି ମାଂସଚପ୍, ଏ ହେଉଛି ମାଛଭଜା, ଏ ହେଉଛି ରସଗୋଲା, ଏ ହେଉଛି ମାଂସଭଜା; ଏ ହେଉଛି ଛେନାପିଠା । ତୁମର ଯାହା ଇଚ୍ଛା ଖାଅ ।” ଦୁହେଁଯାକ ଖାଇବାକୁ ଆରମ୍ଭ କରିବାର ମିନିଟକ ପରେ ଦୁଇଟା ବଡ଼ ବଡ଼ କୁକୁର ଘର ଭିତରକୁ ପଶି

ଅସିଲେ । ମଫସଲ ମୂଷାର ରକ୍ତ ପାଣି ହୋଇଗଲା । ସେ ସହରୀ-ମୂଷା ପଛେ ପଛେ ଦୌଡ଼ି ଯାଇ ଘର କଣରେ ଥିବା ଆଲମାରୀ ପଛରେ ଲୁଚିଗଲା । କୁକୁର ଦୁଇଟା କିଛି ବେଳଯାଏ ଆଲମାରୀ ପାଖ ଶୁଙ୍ଘି ବାହାରି ଗଲେ ।

ସହରୀ ମୂଷା କହିଲା, "ବନ୍ଧୁ, ଆସ, ଖାଇବା ଶେଷ କରି-ଦେବା ।"

ମଫସଲ ମୂଷା କହିଲା, "ଭାଇ, ମୋର ଆଉ ଖାଇବା ଦରକାର ନାହିଁ । ତୁମେ ବଡ଼ ଅଟ୍ଟାଳିକାରେ ରହୁଛ, ନାନା ସୁଖାଦ୍ୟ ଖାଉଛ ସତ; କିନ୍ତୁ ପ୍ରତି ମୁହୂର୍ତ୍ତରେ ତୁମେ ଜୀବନ ଭୟରେ ଚଳୁଛ । ମୁହୂର୍ତ୍ତେ ହେଲେ ତୁମ ମନରେ ଶାନ୍ତି ନାହିଁ । ମୁଁ ମଫସଲରେ ମୋ ଗାତରେ ରହି ଶୁଖିଲା ଧାନ, ଗହମ ଖାଉଥିଲେ ହେଁ ଶାନ୍ତିରେ ଅଛି । ସବୁବେଳେ ଭୟରେ ରହି ଭଲ ଖାଇବାଠାରୁ, ଯାହା ମିଳିଲା ତାହା ଖାଇ ଶାନ୍ତିରେ ଓ ନିର୍ଭୟରେ ରହିବା ଲକ୍ଷ-ଗୁଣେ ଭଲ । ମୁଁ ମୋ ଗାତକୁ ଯାଉଛି । ସହରୀ ଜୀବନ ମୋ ଧାତୁରେ ଚଳିବ ନାହିଁ ।"

ଅଶାନ୍ତି ଭୟ ଯହିଁ ଜାଣ
ଜୀବନ ନୁହେଁ ସେ ମରଣ ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

୧। ଅଲିଭର ଟ୍ୱିଷ୍ଟ
୨। ଗଲିଭରର ଭ୍ରମଣ କାହାଣୀ
୩। ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
୪। ସମୁଦ୍ରର ନାବିକ
୫। ରାଜା ସଲୋମନଙ୍କ ସ୍ୱର୍ଣ୍ଣଖଣି
୬। ବିପ୍ଳବୀ
୭। ଛଦ୍ମ ସିପାହି
୮। ପମ୍ପେଇନଗରୀର ଶେଷଦିନ
୯। ରାଜପୁତ୍ର ଓ ଭିକାରି
୧୦। ଦୁଇଟି ନଗରୀର କାହାଣୀ
୧୧। ଡନ୍‌କ୍ୱିକ୍ସୋଟ
୧୨। ସାଇଲସ୍ ମାରନାର୍
୧୩। ଲୌହମୁଖାଧାରୀ ମଣିଷ
୧୪। ରବିନ୍‌ସନ୍ କ୍ରୁଶୋ
୧୫। ଅଶୀ ଦିନରେ ପୃଥିବୀ ପରିକ୍ରମଣ
୧୬। ଦୁଃଖିନୀ
୧୭। ଦରିଦ୍ର ଡାକ୍ତର
୧୮। ଶେକ୍‌ସପିଅର କାହାଣୀ (୧ମ)
୧୯। " " (୨ୟ)
୨୦। " " (୩ୟ)
୨୧। ଗ୍ରୀସଦେଶର ଉପକଥା
୨୨। ଅନେକ ଆଶା
୨୩। ସମୁଦ୍ର ଗର୍ଭରେ କୋଡ଼ିଏହଜାର ଲିଗ୍ ଭ୍ରମଣ
୨୪। ଟମ୍ ସୟର୍
୨୫। ଟଲଷ୍ଟୟ କାହାଣୀ (୧ମ)
୨୬। " " (୨ୟ)
୨୭। ଚେକଭ୍ କାହାଣୀ
୨୮। ଆଇଭାନ୍‌ହୋ
୨୯। ଚନ୍ଦ୍ରକାନ୍ତ ମଣି
୩୦। ରହସ୍ୟଦ୍ୱୀପ
୩୧। ପ୍ରବାଳ ଦ୍ୱୀପ
୩୨। କଲାଶର
୩୩। ରବିନ୍ ହୁଡ
୩୪। ଫ୍ରାଙ୍କୋ
୩୫। ନିକୋଲାସ ନିକଲ୍‌ବି
୩୬। ହେଂଜ୍ୱର ରୁପର୍ଟ
୩୭। ବଢ଼ଘର
୩୮। ଡେଭିଡ୍ କପରଫିଲ୍ଡ୍
୩୯। ହରଣଗୁଳ
୪୦। କଳାଫୁଲ
୪୧। ଟମକକାଙ୍କ କେବିନ୍
୪୨। ଲୋରନାଡୋନ୍
୪୩। ହୋମର କାହାଣୀ
୪୪। ଗର୍କି କାହାଣୀ
୪୫। ମୋପାସା କାହାଣୀ (୧ମ)
୪୬। " " (୨ୟ)
୪୭। ଜେଣ୍ଡାଦୁର୍ଗର ବନ୍ଦୀ
୪୮। ଇଶପ କାହାଣୀ
୪୯। ରାମାୟଣ କାହାଣୀ
୫୦। ମାର୍ଟିନ ରାଟ୍‌ଲର
୫୧। ଟାଇମ୍ ମେସିନ୍
୫୨। ରାଣୀଙ୍କ ସେବାରେ